# ଗୁରୁଗୋବିନ୍ଦ ସିଂହ

ଶ୍ରୀ ଗୋଦାବରୀଶ ମହାପାତ୍ର

ପ୍ରକାଶକ

ଚୌଧୁରୀ ଶ୍ରୀ ଲୋକନାଥ ନନ୍ଦ

ସାରସ୍ୱତ ଭଣ୍ଡାର

ବାଲୁବଜାର

କଟକ

ପ୍ରଥମ ମୁଦ୍ରଣ

୧୯୫୪

ମୂଲ୍ୟ— ତିନି ଅଣା

# ଶିଖଜାତି

ଆଜିକି ପ୍ରାୟ ପାଞ୍ଚ ଶହ ବର୍ଷ ତଳର କଥା—ପଞ୍ଜାବ ପ୍ରଦେଶର ଗୋଟିଏ କ୍ଷୁଦ୍ର ପଲ୍ଲୀରେ ଗୁରୁ ନାନକଦେବ ଜନ୍ମ ହୋଇଥିଲେ । ଯେତେବେଳେ ଦେଶରେ, ସମାଜରେ ନାନା ଅତ୍ୟାଚାର ବଢ଼େ, ଲୋକେ ଆପେ ଆପେ ବାଟ ଭୁଲି ଧର୍ମ ନାମରେ ନାନା ଅଶାନ୍ତି ଘଟାନ୍ତି, ସେହିପରି ବିପଦ ସମୟରେ ଯୁଗେ ଯୁଗେ ମହାପୁରୁଷମାନେ ଲୋକସମାଜକୁ ନୂଆ ବାଟ ଦେଖାଇଆନ୍ତି, ଦେଶକୁ ନୂଆଭାବରେ ଗଢ଼ିଆନ୍ତି ।

ଏହିପରି ସେ ଦିନ ରାଜପୁତ୍ର ଗୌତମ ସବୁ ସୁଖଭୋଗ ଛାଡ଼ି ଭିକାରି ସାଜିଥିଲେ, ମରୁମୟ ଆରବ ଦେଶରେ ମହମ୍ମଦ ଧର୍ମହୀନ ସମାଜର ଆଖି ଫିଟାଇଥିଲେ, ଜଗତରେ ସତ୍ୟର ପ୍ରତିଷ୍ଠା ପାଇଁ ଯିଶୁ ନିଜର ଜୀବନ ଦେଇଥିଲେ, ମହାପ୍ରାଣ ଚୈତନ୍ୟଙ୍କ ହରିନାମରେ କେତେ ପାଷାଣ ହୃଦୟ ସେ ଦିନ ପାଗଳ ହୋଇ ଯାଇଥିଲା ।

ସେହି ଭାବରେ ମହାତ୍ମା ନାନକ ସମାଜରେ ନୂତନ ଜୀବନ ଦେବାକୁ ଆସିଥିଲେ । ସେତେବେଳେ ପଞ୍ଜାବର ହିନ୍ଦୁ ମୁସଲମାନଙ୍କ ଭିତରେ ଭୟଙ୍କର ଅମେଳ—ଧର୍ମରେ ନ ରହି ସମସ୍ତେ ସମସ୍ତଙ୍କର ଅମଙ୍ଗଳ ପାଞ୍ଚୁଥିଲେ । ଭୋଗବିଳାସରେ ଭୁଲି ଲୋକେ ନିଜ ନିଜ କର୍ତ୍ତବ୍ୟ ଭୁଲି ଯାଇଥିଲେ ।

ସାଧୁସନ୍ନ୍ୟାସୀମାନେ ଶାନ୍ତିରେ ଭଗବାନଙ୍କ ଉପାସନା କରି ପାରୁ ନ ଥିଲେ । ସରଳ ଶାନ୍ତ ନାନକ ଏ ସବୁ ଦେଖି ସହିପାରିଲେ ନାହିଁ । ଅନ୍ଧ ସମାଜକୁ ନୂତନ ବାଟ ଦେଖାଇବା ପାଇଁ ତାଙ୍କ ପ୍ରାଣ ଖାଲି ଅଧୀର ହେଲା । ସେ ଦେଖିଲେ, କେବଳ ହିନ୍ଦୁ ମୁସଲମାନଙ୍କ ଭିତରୁ ଗୋଳମାଳ ତୁଟିଲେ ରାଜ୍ୟରେ ଆଉ ଅଶାନ୍ତି ରହିବ ନାହିଁ । ତହୁଁ ସେ ଏକ ମହାଉଦାର ମନ୍ତ୍ର ପ୍ରଚାର କଲେ । ସେଥିରେ ଆଉ ଜାତି ଜାତି ଭେଦ ରହିଲା ନାହିଁ—ସବୁ ଧର୍ମ, ସବୁ ସମାଜ, ରଜା ପ୍ରଜା, ବ୍ରାହ୍ମଣ ଚଣ୍ଡାଳ ସମସ୍ତଙ୍କ ପାଇଁ ସେ ଏକ ନୂଆ ଧର୍ମ ଗଢ଼ିଲେ । ସେହି ମହାମନ୍ତ୍ରରେ ଯେଉଁମାନେ ଦୀକ୍ଷିତ ହେଲେ, ସେମାନଙ୍କର ନାଁ ହେଲା ଶିଖ । ଶିଖ ଶବ୍ଦର ଅର୍ଥ ଶିଷ୍ୟ । ଭାରତରେ ଆଜିକାଲି ଏହି ଶିଖମାନଙ୍କ ସଂଖ୍ୟା ପ୍ରାୟ କୋଡ଼ିଏ ଲକ୍ଷ ହେବ ।



## ଗୁରୁ

ଆଦିଗୁରୁ ନାନକଙ୍କ ପରେ ଯେଉଁ ମହାପୁରୁଷଗଣ ତାଙ୍କ ପବିତ୍ର ଆସନରେ ବସି ଜାତିର ଗତିବିଧି ଦେଖିଲେ, ସେମାନଙ୍କୁ ମଧ୍ୟ ଗୁରୁ କୁହାଗଲା । ଏହି ଗୁରୁମାନଙ୍କ ସଂଖ୍ୟା ଦଶ ଜଣ—ଦଶମ ଗୁରୁଙ୍କ ପରେ ଆଉ କେହି ଗୁରୁ ହୋଇ ନାହାନ୍ତି । ମୁସଲମାନ ମହମ୍ମଦଙ୍କୁ ଯେପରି ଭାବରେ ଦେଖେ, ଖ୍ରୀଷ୍ଟିଆନ-ଜଗତ୍ ଯିଶୁଙ୍କୁ ଯେପରି ସମ୍ମାନ ଦେଖାଏ, ବୌଦ୍ଧ ବୁଦ୍ଧଙ୍କୁ ଯେପରି ପୂଜା କରେ, ଶିଖ ଗୁରୁଗଣ ସେହିପରି ପବିତ୍ର କରୁଣାମୟ ଅକାଳପୁରୁଷଙ୍କର ଶକ୍ତି ଯେନ ଜଗତରେ ସତ୍ୟଧର୍ମ ପ୍ରଚାର କରିବାକୁ ଆସିଥିଲେ ବୋଲି ଶିଖମାନଙ୍କ ବିଶ୍ୱାସ ।

ଗଲା ପାଞ୍ଚ ଶହ ବର୍ଷ ଭିତରେ ଜଗତରେ ଶିଖଜାତିର ପ୍ରତିଷ୍ଠା ବଡ଼ ଅଦ୍ଭୁତ । ଦେଶରେ ଯେତେବେଳେ ନାନା ଅଶାନ୍ତି ଘୋଟି ରହିଥିଲା, ଶିଖଜାତିର ଜନ୍ମ ସେତିକିବେଳେ । ସେହି ଅଶାନ୍ତିଭିତରେ ନାନକ ଶାନ୍ତିର ବିଜୟପତାକା ଉଡ଼ାଇ ଦେଇ ଯାଇଥିଲେ, ଅମଙ୍ଗଳ ଭିତରେ ମଙ୍ଗଳର

ଧରି ବହ୍ନି ଜଳାଇ ଦେଇଥିଲେ, ନାନା ବ୍ୟବଧାନ ଭିତରେ ମଧ୍ୟ ମିଳନ-ବେଦୀ ଗଢ଼ିଥିଲେ । ତେଣୁ ଆଜି ଶହ ଶହ ବର୍ଷ ପଛକୁ ଆଖି ଫେରେଇଲେ ସେହି ଦୃଶ୍ୟ ଖାଲି ଦେଖିବାକୁ ମିଳେ—ସେହି ଅଶାନ୍ତିରେ ଶିଖଜାତି, ସେହି ଅମଙ୍ଗଳରେ ଶିଖଗୌରବ ସେହିପରି ବଳିଷ୍ଠ ଅଟଳ ମହିମାରେ ଜଗତରେ ନିଜର ଆସନ ଦାବୀ କରି ଆସୁଛି ।

ଶିଖ ଇତିହାସର ପ୍ରତ୍ୟେକ ପୃଷ୍ଠାରେ ରକ୍ତଅକ୍ଷରରେ ଲେଖା ଅଛି "ଆତ୍ମତ୍ୟାଗ" । ଏହି ତ୍ୟାଗର ପ୍ରକୃତ ପୁରୋହିତ ଥିଲେ ଗୁରୁଗଣ । ଜାତିର ସୁଯୋଗ୍ୟ ସେନାପତି ପରି ଏହିମାନେ ଜାତୀୟ ଜୀବନର ଗତି ଠାଏ ଠାଏ ବଦଳାଇ ନିଜେ ଆଗେ ଆଗେ ଦୁର୍ଗମ ମରଣ ପଥରେ ଜୟପତାକା ଧରି ବାହାରି ପଡ଼ିଛନ୍ତି । ସେହି ହେତୁରୁ ଶିଖଜାତିର ଜୀବନ ଯୁଗେ ଯୁଗେ ଏତେ ଉଜ୍ଜ୍ୱଳ—ଏତେ ଅଶାନ୍ତ ।

ନାନକଙ୍କ ପ୍ରିୟ ଶିଷ୍ୟ ଅଙ୍ଗଦ ଶିଖଜାତିର ଦ୍ୱିତୀୟ ଗୁରୁ । ତା ପରେ ତୃତୀୟ ଗୁରୁ ହେଲେ ଅମରଦାସ । ଏମାନଙ୍କ ଅମଳରେ ସେପରି କିଛି ବିଶେଷ ଘଟନା ଘଟି ନାହିଁ । ଆଜିକାଲି ଅମୃତସରଠାରେ ଯେଉଁ ସ୍ୱର୍ଣ୍ଣମନ୍ଦିର ଶିଖମାନଙ୍କର ପବିତ୍ର ତୀର୍ଥସ୍ଥାନ ବୋଲି ପୂଜା ପାଉଛି, ଚତୁର୍ଥ ଗୁରୁ ରାମଦାସ ତାର ଭିତ୍ତି ଦେଇଥିଲେ । ତାଙ୍କ ଅନ୍ତେ ଗୁରୁଅର୍ଜୁନ ପଞ୍ଚମ ଗୁରୁ ଉପାଧି ପାଇଲେ । ଏହିପରି ଜାତିର ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହେଲା—ପୂର୍ବ ଗୁରୁମାନଙ୍କଠାରୁ ଏହାଙ୍କର କାର୍ଯ୍ୟର ଗତି ସମ୍ପୂର୍ଣ୍ଣ ବଦଳିଗଲା । ଧର୍ମ-ସାଙ୍ଗରେ ରାଜନୀତି ମିଶାଇ ଶିଖମାନଙ୍କୁ ଏ ଗୋଟିଏ ଦଳବଦ୍ଧ ବୀରଜାତି କରିବାକୁ ବସିଲେ । ଏହାଙ୍କର ବେଶଭୂଷା, ଆଚାରବ୍ୟବହାର ସବୁ ଥିଲା ରାଜପୁରୁଷଙ୍କ ପରି । ଏହି ସମୟରେ ଶିଖସଂଖ୍ୟା ବହୁ ପରିମାଣରେ ମଧ୍ୟ ବଢ଼ିଥିଲା । ପୂର୍ବ ଗୁରୁମାନଙ୍କ ସକଳ ଆଦେଶ, ଉପଦେଶ ସହିତ ନିଜର ଉପଦେଶସବୁ ମିଶାଇ "ଆଦିଗ୍ରନ୍ଥ" ନାମରେ ଗୋଟିଏ ଧର୍ମଗ୍ରନ୍ଥ ସଂଗ୍ରହ କରିଥିଲେ । ହିନ୍ଦୁମାନେ ବେଦକୁ, ମୁସଲମାନମାନେ କୋରାନକୁ ପୂଜା କଲା ପରି ଶିଖମାନେ ଏହି 'ଗ୍ରନ୍ଥ'କୁ ବଡ଼ ପବିତ୍ର ଭାବରେ

ଦେଖନ୍ତି । ଏହା ଛଡ଼ା ଗୁରୁ ଅର୍ଜୁନ ଧର୍ମରକ୍ଷା ପାଇଁ ଶିଖ୍ୟମାନଙ୍କ ଉପରେ ଏକପ୍ରକାର କର ବସାଇଲେ । ଗୁରୁଙ୍କ ଦ୍ୱାରା ନିଯୁକ୍ତ ହୋଇଥିବା କର୍ମଚାରୀଗଣ ଏହି କରସବୁ ଆଦାୟ କରୁଥିଲେ । ଏହିସବୁ କାରଣରୁ ସେ ଦିଲ୍ଲୀଶ୍ୱରଙ୍କର ବକ୍ରଦୃଷ୍ଟିରେ ପଡ଼ି ବନ୍ଦୀ ହେଲେ ଏବଂ ବନ୍ଦୀ ଥିବା ସମୟରେ ଲାହୋରଠାରେ ଏହାଙ୍କର ମୃତ୍ୟୁ ହେଲା ।

ଏହାଙ୍କ ପରେ ଯେ ଗୁରୁ ହେଲେ, ସେ ଜଣେ ନୂତନ ପଥର ଯାତ୍ରୀ ପରି—ଧର୍ମରକ୍ଷା ଲାଗି ଜାତିକୁ ସେ ଅସ୍ତ୍ର ଧରାଇ ପ୍ରବଳ ରାଜଶକ୍ତି ବିରୁଦ୍ଧରେ ଠିଆ କରାଇଦେଲେ । ଏହା ଫଳରେ ତାଙ୍କୁ ଗୁଆଲିଅର ଦୁର୍ଗରେ ଦୀର୍ଘ ବାର ବର୍ଷ କାଳ ବନ୍ଦୀ ହୋଇ ରହିବାକୁ ପଡ଼ିଲା । ଅନେକ ଯୁଦ୍ଧରେ ସେ ମୋଗଲମାନଙ୍କୁ ପରାସ୍ତ କରିଥିଲେ । ଏହାଙ୍କର ନାମ ହରଗୋବିନ୍ଦ । ଅର୍ଜୁନ ଯାହା କଳ୍ପନା କରିଯାଇଥିଲେ, ଏହି ହରଗୋବିନ୍ଦ ତାହା କାର୍ଯ୍ୟରେ ପରିଣତ କଲେ ।

ହରଗୋବିନ୍ଦଙ୍କ ପରେ ହରରାୟ, ବାଳକ ହରକୃଷ୍ଣ ଏବଂ ହରଗୋବିନ୍ଦଙ୍କ କନିଷ୍ଠ ପୁତ୍ର ତେଗ୍ ବାହାଦୁର ଯଥାକ୍ରମେ ଗୁରୁଗାଦିରେ ବସିଲେ । ଏମାନଙ୍କର ବହୁ ବର୍ଷ ପୂର୍ବରୁ ପଠାଣମାନଙ୍କ ରାଜୁତି ପାଇ ଭାରତର ଭାଗ୍ୟଡୋର ମୋଗଲ ହାତରେ ପଡ଼ିଥିଲା । ରାଜାଧିରାଜ ହୋଇ ସେମାନେ ବିପୁଳ ସୁଖ ସମ୍ପତ୍ତିର ଅଧିକାରୀ ହେଲେ । ଅକବରଙ୍କ ପରେ ଜଣେ ଦୁଇ ଜଣ ପ୍ରଜାପ୍ରିୟ ରାଜାଙ୍କୁ ଛାଡ଼ିଦେଲେ ଅନ୍ୟମାନେ ହିନ୍ଦୁମାନଙ୍କୁ କାଫେର (ବିଧର୍ମୀ) ଭାବି ସେମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ, ଜିଜିଆ କର ବସାଇଲେ, ହିନ୍ଦୁମନ୍ଦିର ଭାଙ୍ଗି ମସଜିଦ୍ ସବୁ ତୋଳିଲେ । ବିଶେଷରେ, ପଞ୍ଜାବ ସେମାନଙ୍କର ଆସିବାର ବାଟ ଥିବାରୁ ସେଠାରେ 'ଏହି ଗୋଳମାଳ ବେଶୀ ହେଲା । ତେଣୁ ଶିଖ ଗୁରୁଗଣ ଆଉ ସେପରି ନିରୀହ, ଶାନ୍ତ ବେଶ ବାନ୍ଧି ସବୁ ସହିବାକୁ ଭଲ ପାଇଲେ ନାହିଁ । ଅର୍ଜୁନ, ହରଗୋବିନ୍ଦ, ହରରାୟ ପ୍ରଭୃତି ବୀର ଗୁରୁ କେବଳ ଜାତିର ଜୀବନରେ ବହୁ ପରିବର୍ତ୍ତନ କରି ଦେଇ ଯାଇଥିଲେ । ଅନ୍ୟାୟ, ଅତ୍ୟାଚାରକୁ ବାଧା ଦେବାପାଇଁ ଜାତିଭିତରେ ଏକପ୍ରକାର ଚଞ୍ଚଳତା ଆସିଥିଲା ।

ଏତିକିବେଳେ ଔରଙ୍ଗଜେବଙ୍କ ରାଜୁତି ଆରମ୍ଭ ହେଲା । ଜୀବନଦାତା ବୃଦ୍ଧ ପିତାଙ୍କୁ ବନ୍ଦୀ କରି, ପ୍ରାଣପ୍ରିୟ ଭାଇମାନଙ୍କୁ ହତ୍ୟା କରି, ସ୍ନେହର ବଡ଼ପୁଅକୁ ନିର୍ବାସିତ କରି ସେ ଦିଲ୍ଲୀସିଂହାସନରେ ବସିଲେ । ତଥାପି ଜୀବନରେ ତାଙ୍କର ଆଶା ମେଣ୍ଟିଲା ନାହିଁ । ହୃଦୟରେ ଦିନକୁ ଦିନ ଅବିଶ୍ୱାସ ବଢ଼ିଲା । ଶାନ୍ତି ରକ୍ଷିବାକୁ ଯାଇ ଦେଶରେ ସେ ନାନା ଅଶାନ୍ତି ସୃଷ୍ଟି କଲେ । ପବିତ୍ର ଧର୍ମ ନାମରେ ଦରିଦ୍ର ହିନ୍ଦୁ ପ୍ରଜାଙ୍କ ଉପରେ ଅତ୍ୟାଚାର ଆରମ୍ଭ ହେଲା । ଦେଶେ ଦେଶେ ହାହାକାର ଉଠିଲା । ଲୋକେ ପ୍ରାଣଭୟରେ ଆକୁଳ ହେଲେ । ଏ ବିପଦରୁ ଦେଶକୁ ରକ୍ଷା କରିବା ପାଇଁ ସାମ୍ରାଜ୍ୟର ଚାରିଆଡେ କେତେ ସ୍ୱାଧୀନଚେତା ମହାବୀର ପ୍ରକାଶ୍ୟ ଭାବରେ ଖଡ୍ଗ ଧରି ସତର୍କ ହେଲେ ।

ସେ ଦିନ ସପ୍ତଦଶ ଶତାବ୍ଦୀର ଏ ମହାବିପ୍ଳବ ଭିତରେ ଜଣେ ତରୁଣ ସନ୍ନ୍ୟାସୀ ଭାରତର ବନଗିରି କନ୍ଦରାନ୍ତରେ ବୁଲି ବୁଲି, ଜୀବନର ସୁଖ ସମ୍ପଦ ସ୍ୱଧର୍ମ ନାମରେ ଆହୁତି ଦେଇ, ଜାତିକି ଅଗ୍ନିମନ୍ତ୍ରରେ ଦୀକ୍ଷିତ କରି ସାମ୍ରାଜ୍ୟ ମୂଳରେ ଯେ କଠୋର ଆଘାତ କଲେ, ତାହା ସୁଦୃଢ଼ ମୋଗଲ ଶକ୍ତିକି ଟଳମଳ କରିଦେଲା । ଏହି ଦେଶଭକ୍ତ, ଧର୍ମପ୍ରାଣ, ମହାମାନବ ଶିଖଜାତିର ଦଶମ ଗୁରୁ 'ଗୋବିନ୍ଦ ସିଂହ' ।

## ବାଳକ ଗୋବିନ୍ଦ

ଗୁରୁ ତେଗ୍ ବାହାଦୁର ସ୍ୱଧର୍ମ ଓ ସ୍ୱଜାତିର ଦୁର୍ଦ୍ଦଶା ଦେଖି ଦେଖି ଥରେ ଆସାମ ଗଲାବେଳକୁ ଗର୍ଭବତୀ ପତ୍ନୀଙ୍କୁ ପାଟନା ସହରରେ ରଖାଇ ଦେଇ ଯାଇଥିଲେ । ସେହିଠାରେ ୧୬୬୧ ଖ୍ରୀଷ୍ଟାବ୍ଦର ପୌଷମାସ ସପ୍ତମୀ ଦିନ ମହାବୀର ଗୁରୁ ଗୋବିନ୍ଦ ସିଂହ ଜନ୍ମ ହୋଇଥିଲେ । ପିତା ଆସାମରୁ ଫେରିଲା ପରେ ପତ୍ନୀ ଓ ପୁତ୍ରକୁ ଜଣେ ବିଶ୍ୱାସୀ ଭକ୍ତଙ୍କ ଘରେ ରଖାଇ ଦେଇ ପୁଣି ସେ ପଞ୍ଜାବକୁ ଫେରିଗଲେ । ଏହି ସମୟରେ ତାଙ୍କୁ ସେଠି

କଠୋର ସାଧନା ଭିତରେ ଚଳିବାକୁ ପଡ଼ିଥିଲା । ଗୁରୁଅର୍ଜ୍ଜନ ଶହୀଦ୍, ସାହା ଭରସା କେହି ନାହାନ୍ତି । ସାଧୁ ସନ୍ନ୍ୟାସୀ ଭକ୍ତମାନେ ମୁସଲମାନଙ୍କ ଭୟରେ ପାଖରେ ଆସି ଶରଣ ପଶୁଥାନ୍ତି । ସାମାନ୍ୟ କେତେ ଜଣ ଶିଷ୍ୟଙ୍କୁ ଧରି ସେ ପ୍ରଥମେ ଶତଦ୍ରୁ ନଦୀ କୂଳରେ ଗୋଟିଏ ସହର ବସାଇବାର କଳ୍ପନା କଲେ । ଗୁରୁଙ୍କ ଆଦେଶରେ ଦେଶ ବିଦେଶରୁ ଅଦ୍ଭୁତ ଶିଷ୍ୟ ଘରଦ୍ୱାର ଛାଡ଼ି ଆସି ସେଠି ବସତି କରି ରହିଲେ । ଦେଖୁ ଦେଖୁ ତିନି ଚାରି ବର୍ଷ ମଧ୍ୟରେ ଶତଦ୍ରୁର ଶୀତଳ ଉପକଣ୍ଠରେ ଗୋଟିଏ ସୁନ୍ଦର ଜନପୂର୍ଣ୍ଣ ନଗର ସ୍ଥାପିତ ହେଲା । ଆନନ୍ଦରେ ତେଗ୍ ବାହାଦୁର ତାର ନାଁ ଆନନ୍ଦପୁର ଦେଲେ । ଗୋବିନ୍ଦଙ୍କ ଜୀବନର ପ୍ରାୟ ସକଳ ସାଧନା ଏହି ଆନନ୍ଦପୁରର ଆନନ୍ଦ ଭବନରେ ହୋଇଥିଲା ।

ପାଟନାରୁ ସ୍ୱଦେଶକୁ ଫେରିଲାବେଳକୁ ଗୋବିନ୍ଦଙ୍କୁ ସାତ ବର୍ଷ ମାତ୍ର ବୟସ । ପିତା ସାଙ୍ଗେ ସାଙ୍ଗେ ପୁଅର ଶିକ୍ଷା ପାଇଁ ସବୁ ବ୍ୟବସ୍ଥା କରି-ଦେଲେ । ଏକା ସମୟରେ ତାଙ୍କୁ ଗୁରୁମୁଖୀ ଏବଂ ପାର୍ଶିଭାଷା ଶିଖିବାକୁ ପଡ଼ିଥିଲା । ଏହା ସହିତ ପୁଣି ଜଣେ ପ୍ରବୀଣ ରାଜପୁତ ବୀର ଯୁଦ୍ଧ ବିଦ୍ୟା ଶିଖାଇବା ପାଇଁ ରହିଥାନ୍ତି । ଘୋଡ଼ା ଚଢ଼ିବା, ତୀର ମାରିବା, ଖଣ୍ଡା ଚଳେଇବାକୁ ଗୋବିନ୍ଦଙ୍କୁ ପିଲାଦିନରୁ ବଡ଼ ଭଲ ଲାଗେ । ଅନେକ ସମୟରେ ସେ ମାଆଙ୍କ ପାଖରେ ପାଠ ପରୀକ୍ଷା ଦେବାକୁ ଯାଇ ବର୍ଚ୍ଛା ବୁଲାନ୍ତି ଏବଂ କୌଣସି ଗୋଟେ ଢିପ ଜାଗାକୁ ଦୁର୍ଗ କରି ସାଙ୍ଗ ପିଲାଙ୍କ ସାଙ୍ଗେ ତାକୁ ଜୟ କରିବା ପାଇଁ ବାହାରନ୍ତି । ପୁଅର ପିଲାଦିନରୁ ଅସ୍ତ୍ର ଶସ୍ତ୍ରରେ ଏତେ ଆଦର ଦେଖି ମାଆ ଅନେକ ସମୟରେ ତାଙ୍କୁ କୋଳରେ ବସାଇ ରାମ ରାବଣ, କଂସ କୃଷ୍ଣ, ହରି ଗୋବିନ୍ଦ ପ୍ରଭୃତି ବୀରମାନଙ୍କ କଥା କହନ୍ତି । ମୋଗଲମାନେ ଗୁରୁମାନଙ୍କୁ କିପରି କଷ୍ଟ ଦେଇଥିଲେ ଶୁଣି ଗୋବିନ୍ଦଙ୍କ ମନ ରାଗରେ ଜଳି ଉଠେ । ପିଲାଦିନେ ତାଙ୍କର ଗୋଟିଏ ଖେଳଘର ଥାଏ । ସେଠି ସେ ଆପଣାର ଖଣ୍ଡା ଛୁରୀ ପ୍ରଭୃତି ରଖି ପ୍ରତିଦିନ ଫୁଲଚନ୍ଦନ ଦେଇ ପୂଜା କରନ୍ତି, ଆଖିରୁ ଲୁହ ଢାଳି ଢାଳି ମୁଣ୍ଡିଆ ମାରନ୍ତି । ସେ ଠିକ ଛୁଦଠିର କଥା କେହି ବୁଝିପାରନ୍ତି ନାହିଁ । ଖାଲି ଦେଖନ୍ତି, ସେଇ ଉଜ୍ଜ୍ୱଳ ମୁହଁଟି ନାଲି ପଡ଼ି ଆସେ, ଆଖିରୁ ଝର ଝର ଲୁହ ବୋହେ ।

ଦିନେ ଆନନ୍ଦପୁରଠାରେ କାଶ୍ମୀରି ଦେଶର କେତେ ଜଣ ବ୍ରାହ୍ମଣ ଆଉରଙ୍ଗଜେବଙ୍କର ଅନ୍ୟାୟ ଅତ୍ୟାଚାରର କଥା କହି ତେଗ୍ ବାହାଦୁରଙ୍କ ପାଖେ ଆସି ଶରଣ ପଶିଲେ । ସରଳ ନିରୀହ ପ୍ରଜାଙ୍କର ସେହି ଦୁଃଖ କାହାଣୀ ଶୁଣି ଗୁରୁ କାନ୍ଦି କାନ୍ଦି କହିଲେ—"ଭାଇମାନେ, ସଂସାରରେ ଭକ୍ତମାନଙ୍କୁ ବହୁତ କଷ୍ଟ ସହିବାକୁ ପଡ଼େ । ଆଜିକାଲି ଦେଶରେ ଅନ୍ୟାୟ ଯେପରି ବଢ଼ିଛି, ସେଥିରୁ ଦେଶକୁ ରକ୍ଷା କରିବା ପାଇଁ ଜୀବନର କୌଣସି ଗୋଟିଏ ପ୍ରିୟ ବସ୍ତୁର ବଳି ଲୋଡ଼ା । ତା ନ ହେଲେ ଆଉ ଉଦ୍ଧାରର ଉପାୟ ନାହିଁ ।"

ନଅ ବର୍ଷର ବାଳକ ଗୋବିନ୍ଦ ପିତାଙ୍କ ପାଖେ ବସି ଏସବୁ କଥା ଶୁଣୁଥିଲେ । ମନରେ ତାଙ୍କର କି ଭାବ ଆସିଲା କେଜାଣି, ଖାଲି ଆଖି ଦୁଇଟି ଛଳ ଛଳ ହୋଇ ପଡ଼ିଲା । କହିଲେ—"ବାପା ! ଆପଣଙ୍କଠାରୁ କଣ ଭକ୍ତମାନଙ୍କର ଆଉ ପ୍ରିୟ ଜିନିଷ ଅଛି ?" ବାଳକ ମୁହଁରୁ ଏ କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଗୁରୁ ଆଉ କିଛି କହିଲେ ନାହିଁ । ତାଙ୍କ ମନକୁ ଏ କଥାଟି ବଡ଼ ଦୋହଲିଲା । ସେ ବୁଝିଲେ, ଗୋବିନ୍ଦଙ୍କ ଦ୍ୱାରା ଭଗବାନ ତାଙ୍କ ପାଖକୁ ଧର୍ମର ଆହ୍ୱାନ ପଠାଇଛନ୍ତି । ପୁଅର ପିଠି ଆଉଁସି ଆଉଁସି ବ୍ରାହ୍ମଣମାନଙ୍କୁ କହିଲେ—"ଭକ୍ତଗଣ ! ଯାଅ, ଦିଲ୍ଲୀପତିଙ୍କି କହିବ, ଶିଖ ଗୁରୁଙ୍କୁ ଆଗ ମୁସଲମାନ ନ କଲେ ଆମେ କେହି ନିଜ ଧର୍ମ ଛାଡ଼ିବୁ ନାହିଁ ।"

ଆଉରଙ୍ଗଜେବ ଏ ସମ୍ବାଦ ପାଇଲେ । ରାଗରେ ତାଙ୍କ ହୃଦୟ ଜଳି ଉଠିଲା । ସଙ୍ଗେ ସଙ୍ଗେ ସେ ତେଗ୍ ବାହାଦୁରଙ୍କୁ ଦିଲ୍ଲୀକି ଡକାଇ ପଠାଇଲେ । ପ୍ରାଣପ୍ରିୟ ପୁତ୍ର ଏବଂ ଭକ୍ତମାନଙ୍କୁ ଛାଡ଼ି ଗୁରୁ ଦିଲ୍ଲୀକୁ ବାହାରିଲେ । ସେ ବିଦାୟ ତାଙ୍କର ଶେଷ ବିଦାୟ ହେଲା । ଗଲାବେଳେ ସେ କହିଗଲେ—ଭଗବାନ ଯାହା କରନ୍ତି ସବୁ ମଙ୍ଗଳ ପାଇଁ ।

ଦିଲ୍ଲୀରେ ଗୁରୁଙ୍କୁ ମୁସଲମାନ କରିବା ପାଇଁ ସମ୍ରାଟଙ୍କ ପକ୍ଷରୁ ବହୁ ଚେଷ୍ଟା କରା ହେଲା—ଧନଲୋଭ, ସାମ୍ରାଜ୍ୟଲୋଭ ମଧ୍ୟ ଦେଖା ହେଲା ;

ମାତ୍ର ସେ କାହିଁରେ ହେଲେ ଟଳିଲେ ନାହିଁ । ଶେଷରେ ସେ ଜାତି ପାଇଁ, ଧର୍ମ ପାଇଁ ମୁକ୍ତ ରାଜଦାଣ୍ଡରେ ଘାତକକୁ ବେକ ଦେଖାଇ ଦେଲେ । ମୁଣ୍ଡ ହଣା ହେବାପରେ ଦେଖାଗଲା, ତଳେ ଖଣ୍ଡିଏ ଲେଖା ପଡ଼ିଛି । ସେଥିରେ ଲେଖା ଅଛି "ଶିର ଦିଆ, ଶେର ନ ଦିଆ"—ଅର୍ଥାତ୍ ମୁଣ୍ଡ ଦେଲି; କିନ୍ତୁ ବିଶ୍ୱାସ ଦେଲି ନାହିଁ । ଏହି ନିଷ୍ଠୁର ଘଟଣାଟି ୧୬୭୫ ଖ୍ରୀଷ୍ଟାବ୍ଦରେ ଘଟିଥିଲା ।



## ଅଭିଷେକ

ଦିଲ୍ଲୀ ଦାଣ୍ଡରେ ପିତା ହଣା ହେଲେ । ଏଥିରେ ଗୋବିନ୍ଦ ମର୍ମାହତ ହେଲେ ସତ, ମାତ୍ର ତଳେ ହେଲେ ବିଚଳିତ ହେଲେ ନାହିଁ—ଯେପରି ସେ ଆଗରୁ ଏ ସବୁ କଥା ଜାଣିଥିଲେ । ପିତାଙ୍କର ଏ ମରଣ ଯାତ୍ରା ତାଙ୍କୁ ଧର୍ମର ଜୟଯାତ୍ରା ପରି ବୋଧ ହେଲା । ଏହି ମରଣଲୀଳା ଭିତରେ ସେ ଜାତିର ନାଡ଼ି ଚିପି ଦେଖିଲେ, ତାର ଜୀବନ ଅଛି—ସକଳ ବିପଦକୁ ସେ ବୁଝି ପଡ଼ିଲି ପାରିବ, ଧର୍ମପାଇଁ ଖଣ୍ଡ-ପ୍ରଳୟ ସୃଷ୍ଟି କରିପାରିବ । ତେଣୁ ଆଗରେ କି ଏକ ମହାବିପ୍ଳବ ଯୋଗାଡ଼ପାଇଁ ତାଙ୍କ ହୃଦୟ ଖାଲି ଅସ୍ଥିର ହେଲା । ସ୍ୱଦେଶର ବିପ୍ଳବ ଭିତରେ ତାଙ୍କର ଜନ୍ମ; ବିପ୍ଳବ ତାଙ୍କ ଜୀବନର ଚିର ସଙ୍ଗୀ । ଦେଶପାଇଁ, ଧର୍ମପାଇଁ, ନ୍ୟାୟପାଇଁ, ସତ୍ୟପାଇଁ ଜାତି ଯେ ପ୍ରତି ମୁହୂର୍ତ୍ତରେ ବିପ୍ଳବକାମୀ ହେବେ, ସେ ତାହା ଜୀବନର ପଦେ ପଦେ ଦେଖାଇଦେଇ ଯାଇଛନ୍ତି ।

ଶତଦ୍ରୁ କୂଳରେ ପିତାଙ୍କର ଶ୍ରାଦ୍ଧ କାର୍ଯ୍ୟ ଶେଷ ହେଲା । ବର୍ତ୍ତମାନ ସେହି ସ୍ଥାନରେ ଗୋଟିଏ ସ୍ମୃତିମନ୍ଦିର ଅଛି । ଶିଖମାନେ ସେଠାକୁ ଯାଇ ଗୁରୁଙ୍କର ଗୁଣ ଗାନ କରନ୍ତି । ୧୬୭୫ ଖ୍ରୀଷ୍ଟାବ୍ଦର ବୈଶାଖ ପ୍ରଥମ ଦିନ ଗୋବିନ୍ଦ ଦଶମ ଗୁରୁ ଗୋବିନ୍ଦ ସିଂହ ଉପାଧି ଧାରଣ କରି ଶିଖ-ଜଗତର ଗୁରୁ ସିଂହାସନରେ ବସିଲେ । ଏ ଅଭିଷେକ ଏକ ମହାଜାତୀୟ

ଉତ୍ସବରେ ପରିଣତ ହୋଇଥିଲା । ହେବାର ତ କଥା । ଧର୍ମପାଇଁ ବୃନ୍ଦ ତେଗ୍ ବାହାଦୁର ପ୍ରାଣବଳି ଦେଇଛନ୍ତି, ଦିଲ୍ଲୀପତିଙ୍କ ଅତ୍ୟାଚାର ପ୍ରବଳ ହୋଇ ଉଠିଛି, ଦେଶେ ଦେଶେ ବିଦ୍ରୋହୀମାନେ ମୁଣ୍ଡ ଟେକିଛନ୍ତି— ଦୁଃଖରେ କ୍ରୋଧରେ ଦଗଦଗରୁ ବର୍ଷାଧାରି ପରି ଶିଖମାନେ ଆନନ୍ଦପୁରର ଏ ଆନନ୍ଦ ଉତ୍ସବରେ ଆସି ଯୋଗ ଦେଲେ ।

ଗୋବିନ୍ଦ ଆଦେଶ ପ୍ରଚାର କରିଥିଲେ ଯେ, ଏଣିକି ଗୁରୁଙ୍କୁ ଆଉ କିଛି ଉପହାର ନ ଦେଇ ଅସ୍ତ୍ରଶସ୍ତ୍ର ଉପହାର ଦେଲେ ଗୁରୁ ସନ୍ତୁଷ୍ଟ ହେବେ । ଏ ଆଦେଶ ପାଇ ଗୁରୁଭକ୍ତ ଶିଖମାନେ କିଏ ଖଣ୍ଡା, କିଏ ଢାଲ, କିଏ ତରବାରି, କିଏ ବା ଛୁରି ଯେ ଯାହା ସାମର୍ଥ୍ୟ ଅନୁସାରେ ଗୁରୁଙ୍କପାଇଁ ଉପହାର ଧରି ଆସିଲେ ।

ସ୍ଵଜାତିର ସେଇ ଧର୍ମବୀରମାନଙ୍କୁ ଆଗରେ ଦେଖି ଗୋବିନ୍ଦଙ୍କ ମନ ଆନନ୍ଦରେ ଫୁଲି ଉଠୁଥାଏ । କେତେ କଥା କଳ୍ପନା କରୁଥାଆନ୍ତି । ଅତ୍ୟାଚାରୀ ଦୁଷ୍ଟମାନଙ୍କ ହାତରୁ ସ୍ଵଧର୍ମ ରକ୍ଷା ନ କଲେ, ଗୁରୁହତ୍ୟାର ପ୍ରତିଶୋଧ ନ ନେଲେ ତାଙ୍କ ଜୀବନର ଆଶା ପୂରିବା ଅସମ୍ଭବ । ସେ ସେଥିପାଇଁ ଯେପରି ଜଗତକୁ ଆସିଥିଲେ—ସାଧୁମାନଙ୍କୁ ରକ୍ଷା କରି ଦୁଷ୍ଟକୁ ଧ୍ଵଂସ କରିବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା ।

ମାତ୍ର କୌଣସି ଧର୍ମ ପ୍ରତି ତାଙ୍କର ଘୃଣା ବା ହିଂସା ନ ଥିଲା । ସେ ଜାତିରେ ଶିଖ ହୋଇ ମଧ୍ୟ ମୁସଲମାନ ପୀରମାନଙ୍କୁ ବଡ଼ ଆଦର କରୁଥିଲେ । ତାଙ୍କ ଗୁଣରେ ମୁଗ୍ଧ ହୋଇ କେତେ ଖାଣ୍ଟି ମୁସଲମାନ ଅନେକ ସମୟରେ ତାଙ୍କୁ ସାହାଯ୍ୟ କରିଛନ୍ତି । ଯୌବନ ସମୟରେ ସେ ଜଣେ ମୁସଲମାନ ସାଧୁଙ୍କ ପାଖରେ ବଡ଼ ଆଦରରେ ଇସ୍‌ଲାମ ଧର୍ମଶାସ୍ତ୍ର 'କୋରାନ' ପଢ଼ିଥିଲେ । ଏପରି କି ବିପଦ ବେଳେ ସେ ମୁସଲମାନ ଘରେ ଖାଇଛନ୍ତି ।

ବନ୍ଦୀଘରେ ଦୁଃଖରେ, ଶରୀରରେ ସାଜାହାନ ମଲାବେଳେ ପୁଅ ଆଉରଙ୍ଗଜେବଙ୍କୁ କହି ଯାଇଥିଲେ—

"ହିନ୍ଦୁ ଧରମକୋ ନହି ବଗାରେ
ଏକେ ଦୁନହୋକୋ ପ୍ରତିପାଲେ ।"

ଅର୍ଥାତ୍ ହିନ୍ଦୁ ଧର୍ମ ପ୍ରତି ଅତ୍ୟାଚାର କର ନାହିଁ । ହିନ୍ଦୁ ମୁସଲମାନ ଉଭୟଙ୍କୁ ସମାନ ଭାବରେ ପାଳନ କର ; ମାତ୍ର ଆଉରଙ୍ଗ ଜେବ ପିତାଙ୍କର ଏ ଆଦେଶକୁ ପାଦରେ ଦଳି ଦେଇଥିଲେ—ହିନ୍ଦୁଙ୍କର ରାଜା ହୋଇ ସରଳ ପ୍ରଜାଙ୍କ ଧର୍ମରେ ଆଘାତ କଲେ । ଜାତି ସବୁ ସହିପାରେ ; ମାତ୍ର ଧର୍ମରେ ବାଧା ପଡ଼ିଲେ ତା ମର୍ମକୁ ବାଧେ । ସେହି ଆଘାତ ଫଳରେ "ଭୂମିକମ୍ପ ହେଲା, ଧରଣୀ ଫାଟିଲା ।"—ଭାରତରେ ଦୁଇଟି ରଣଦୁନ୍ଦୁଭି ବାଜି ଉଠିଲେ ! ଗୋଟିଏ ଦକ୍ଷିଣରେ ମରହଟ୍ଟା, ଅନ୍ୟଟି ପଞ୍ଜାବରେ ଶିଖ ।



## ସାଧନା

ଅଭିଷେକ ପରେ ଗୋବିନ୍ଦଙ୍କ ମନ ଆଉ ସ୍ଥିର ହୋଇ ରହିଲା ନାହିଁ । ପ୍ରତି ମୁହୂର୍ତ୍ତରେ ସେ ଜାତିର ଦୁର୍ଦ୍ଦଶା ଦେଖିବାକୁ ପାଇଲେ । ଦୁର୍ବଳ ଉପରେ ପ୍ରବଳର ଅତ୍ୟାଚାର ଦିନକୁ ଦିନ ବଢ଼ିଲା । ଆଉରଙ୍ଗ ଜେବ ଧର୍ମାନ୍ଧଭାବରେ ହିନ୍ଦୁମାନଙ୍କୁ କାଫେର ଭାବି ଘୋର ଅତ୍ୟାଚାର ଆରମ୍ଭ କଲେ । ସରଳ, ଉଦାର ତେଗ୍ ବାହାଦୁରଙ୍କୁ ପ୍ରାଣରେ ମାରି ସମ୍ରାଟ୍ ଦେଶକୁ ଅଧିକ ଉତ୍ତେଜିତ କରି ଦେଇଥିଲେ । ଲୋକଙ୍କ ମନରେ ଅଶାନ୍ତି ବହ୍ନି ଉଠୁଥିଲା । ଗୁରୁ ଏ ସବୁଥିରୁ ଜାତିକି ରକ୍ଷା କରିବା ପାଇଁ, ପୃଥିବୀରେ ଶିଖ ଜାତିକି ବୀର କରିବା ପାଇଁ ଜୀବନର ମଧୁର ଯୌବନରେ କଠୋର ସାଧନା ଆରମ୍ଭ କଲେ । ତାଙ୍କର ସାଧନା କ୍ଷେତ୍ର ହେଲା ନିର୍ଜ୍ଜନ ଗିରି ଗୁହା, ଭୟଙ୍କର ବନ ଜଙ୍ଗଲ । କେତୋଟି ବିଶ୍ୱାସୀ ଭକ୍ତ ସେହି ସମୟରେ ତାଙ୍କର ସଙ୍ଗୀ ଥାନ୍ତି । ଶିଖ ପୁରାଣ ଅନୁସାରେ ସେ ଏହିପରି କୋଡ଼ିଏ ବର୍ଷକାଳ ଗୁପ୍ତ ଭାବରେ ଧର୍ମ ସାଧନାରେ ହିମାଳୟ ପର୍ବତର ଉପକଣ୍ଠରେ ରହିଥିଲେ । ଏହି ସାଧନା ସମୟରେ ସେ ଖଣ୍ଡା, ତଲୱାର ଚାଳନା କରି ଯୁଦ୍ଧବିଦ୍ୟା ମଧ୍ୟ ଶିକ୍ଷା କରି-

ଥିଲେ । ତାପରେ ପଞ୍ଚଢରିଶି ବର୍ଷ ବୟସରେ ଯୋଗ ସାଧନାରୁ ଫେରି ପ୍ରକାଶ୍ୟ ଭାବରେ ଜାତିର ସକଳ ଭାର ଗ୍ରହଣ କଲେ । ସେହି ସମୟରୁ ସେ ଦବାନ୍ଧ ହୋଇ ସାରିଥିଲେ ।

ଗୋବିନ୍ଦ ଯୋଗ ସାଧନାରୁ ଫେରି ଆସିଲାପରେ ଲୋକଙ୍କ ଭିତରେ ଏକପ୍ରକାର ଉତ୍ସାହ ଆସିଲା । ପ୍ରତିଦିନ ଗୁରୁଙ୍କୁ ଦେଖିବା ପାଇଁ ନାନା ପ୍ରଦେଶରୁ ଶିଷ୍ୟମାନେ ଆସିଲେ । ନୂଆ ନୂଆ ହାତୀ ଘୋଡ଼ା ଉପହାର ମିଳିଲା । ନାନାପ୍ରକାର ଅସ୍ତ୍ର ଶସ୍ତ୍ର, ଯୁଦ୍ଧ ସରଞ୍ଜାମରେ ଆନନ୍ଦପୁର ଦୁର୍ଗ ପୂରି ଉଠିଲା । ଶିଷ୍ୟଗଣ ନୂତନ ଶିକ୍ଷା, ନୂତନଭାବରେ ନୂତନ ଜୀବନ ପାଇ ଅସ୍ତ୍ର ଚାଳନାରେ ପଟୁ ହୋଇ ଉଠିଲେ । ଅଳ୍ପଦିନ ମଧ୍ୟରେ ଦେଶର ଦରିଦ୍ର ପ୍ରଜାଙ୍କ ପ୍ରାଣରେ ମଧ୍ୟ ଗୁରୁଙ୍କର ଏ ଡାକ ଶୁଭିଲା । ପୁର ପଲ୍ଲୀ ଧରି ଏ ବିଜୟ ବାର୍ତ୍ତା ଶୁଣିବାକୁ ଲୋକେ ବ୍ୟାକୁଳ ହେଲେ । ବୃଦ୍ଧମାନେ ପ୍ରତି ମନ୍ଦିରରେ ଶୁଭ ମନାସିଲେ, ଯୁବକଗଣ ଧର୍ମଯୁଦ୍ଧରେ ଯୋଗ ଦେବାପାଇଁ ସଂକଳ୍ପ କଲେ, ବାଳକମାନେ ବଳବାଢ଼ି ପଡ଼ଆରେ ଗୁରୁଙ୍କର ଜୟ ସଙ୍ଗୀତ ଗାଇ ବୁଲିଲେ ।

ମାତ୍ର ଗୋବିନ୍ଦ ବୁଝିଥିଲେ, ପ୍ରବଳ ମୋଗଲ ଶକ୍ତି ସଙ୍ଗେ ଯୁଦ୍ଧ କରିବାକୁ ହେଲେ ଏସବୁ ଆୟୋଜନ କିଛି ନୁହେ । ଛିନ୍ନ ଭିନ୍ନ ଦଳ ଭିତରେ ସମାନ ଶକ୍ତି ନ ଖେଳିଲେ, ବିଦ୍ୟୁତର ଚମକ ଧମକରେ ନ ନାଚିଲେ ରଣକ୍ଷେତ୍ରରେ ଠିଆ ହେବା ବୃଥା ଚେଷ୍ଟା ମାତ୍ର । ତେଣୁ ଜାତିର ପ୍ରତ୍ୟେକ ଲୋକ ଯୁଦ୍ଧବିଦ୍ୟା ଶିଖିବାପାଇଁ ଶିଖ ଦରବାରରେ ଉପଦେଶ ଦିଆଗଲା । ଏ ମଧ୍ୟରେ ସେ ଉପଯୁକ୍ତ ବୀରମାନଙ୍କୁ ଦରମା ଦେଇ ଗୋଟିଏ ଶ୍ରେଷ୍ଠ ସୈନ୍ୟଦଳ ଗଠନ କଲେ । ଅନେକ ସମୟରେ ଏହି ସୈନ୍ୟମାନଙ୍କୁ ଧରି ଗୋବିନ୍ଦ ଆଖପାଖ ବନଗିରି କନ୍ଦରରେ ଶୀକାର କରିବା ପାଇଁ ବାହାରନ୍ତି । କେବଳ ଶୀକାର କରିବା ତାଙ୍କର ଲକ୍ଷ୍ୟ ନ ଥାଏ । ନିକଟରେ ଯେ ଏକ ରଣଯଜ୍ଞରେ ତାଙ୍କୁ ପୁରୋହିତ ହେବାକୁ ହେବ, ସେଥିପାଇଁ ଉପଯୁକ୍ତ ସ୍ଥାନ ଠିକ୍ କରିବା ଏଥିରେ ଅନ୍ୟ ଉଦ୍ଦେଶ୍ୟ ଥାଏ । ଏହି ଭାବରେ ସେ ଜୀବନର ପ୍ରତି ମୁହୂର୍ତ୍ତିରେ ଗମ୍ଭୀର

ସାଧନା ଭିତରେ, ଶତଦ୍ରୁ ନଦୀର କୂଳେ କୂଳେ, ନିର୍ଜନ ଅରଣ୍ୟରେ ପ୍ରିୟ ଭକ୍ତମାନଙ୍କୁ ଗୋଟିଏ ରଣକୌଶଳପୂର୍ଣ୍ଣ ବୀରଜାତି କରି ଗଢ଼ିଦେଲେ । ତାଙ୍କର ସେହି ମଧୁର ହୃଦୟ, ସରଳ-ତୀବ୍ର ଗୂଢ଼ବାଣୀ, ଗମ୍ଭୀର ବଚନ ଦୁର୍ବଳ ନିଃସହାୟ ପିଣ୍ଡରେ ପ୍ରାଣ ଆଣିବାର କଥା । ତାହାହିଁ ହେଲା— କେତେ ଯୁଗର କ୍ଷୀଣ ଜାତୀୟ ଜୀବନ ଆପଣାର ମହତ୍ତ୍ୱ ପାଇ ଜାଗି ଉଠିଲା । ଗୁରୁ ଶିଷ୍ୟମାନଙ୍କୁ ବୀର କରିବାକୁ ଯାଇଁ ଯାଇଁ ମହାବୀର ହୋଇ ଉଠିଲେ, ଜାଗରଣ ଆଣୁ ଆଣୁ ମୃତ୍ୟୁଞ୍ଜୟ ପରି ନାଚିଲେ ।

କିଛି ଦିନ ପରେ ଗୋବିନ୍ଦ ଆପଣାର ଭକ୍ତମାନଙ୍କୁ ନିଜ ନିଜର ଘୋଡ଼ା ରଖି ଅସ୍ତ୍ର ଶସ୍ତ୍ର ତିଆରି କରିବାକୁ ଆଦେଶ ଦେଲେ । ଏହି ସମୟରେ ଦିଲ୍ଲୀଶ୍ୱର କୌଣସି ଏକ ଅପରାଧରେ ପାଞ୍ଚ ଶହ ମୋଗଲ ସୈନ୍ୟ ଏବଂ କେତେ ବଡ଼ ବଡ଼ ସରଦାରଙ୍କୁ ଚାକିରିରୁ ତଡ଼ି ଦେଇଥିଲେ । ନିର୍ବାସିତ ସୈନ୍ୟଗଣ ଗୋବିନ୍ଦଙ୍କର ଏସବୁ ଯୁଦ୍ଧ ଆୟୋଜନ ଆଗରୁ ଜାଣିଥିଲେ । ସେମାନେ ଆସି ତାଙ୍କ ପାଖେ ଆଶ୍ରୟ ମାଗିବାରୁ ଗୁରୁ ଆନନ୍ଦରେ ସେମାନଙ୍କୁ ଦୈନିକ ଦରମା ଦେଇ ନିଜର ସୈନ୍ୟଦଳରେ ମିଶାଇନେଲେ ।

ସୈନ୍ୟଶକ୍ତି ବଢ଼ିବା ସାଙ୍ଗେ ସାଙ୍ଗେ ଗୋବିନ୍ଦଙ୍କର କାର୍ଯ୍ୟଗତି ଆହୁରି ବଦଳିଗଲା । କ୍ରମେ କ୍ରମେ ଶିଖଗଣ ନବ ବଳରେ ଭାରତର ଏକ କୋଣରେ ଏକ ମହାବିପ୍ଳବର ଯୋଗାଡ଼ କରି ବସିଲେ । ସେହି ସମୟରେ ଆସାମ ଦେଶର ରାଜା ଗୁରୁଦର୍ଶନ ପାଇଁ ଆନନ୍ଦପୁର ଆସି ବହୁତ ଧନ ରତ୍ନ ଏବଂ ଗୋଟିଏ ପୋଷା ଧଳା ହାତୀ ଉପହାର ଦେଇ ଯାଇଥିଲେ ।

ସେତେବେଳେ ଆନନ୍ଦପୁରକୁ ଲାଗି ବହୁତ ଛୋଟ ଛୋଟ ମୋଗଲ-ଅଧିକୃତ କରଦ ରାଜ୍ୟ ଥାଏ । ଶିଖଗଣ ଅନେକ ସମୟରେ ସେହି ରାଜ୍ୟମାନଙ୍କ ଭିତରେ ବାଦ୍ୟ ବାଜଣା ବଜାଇ ଶୀକାର କରି ବାହାରନ୍ତି । ରାଜାମାନେ ଗୋବିନ୍ଦଙ୍କର ଏସବୁ ବଳ କୌଶଳ ଦେଖି ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ଥରେ ବାଇଶି ଜଣ ପାହାଡ଼ିଆ ରଜା ଭୀମଚନ୍ଦ୍ର

ନାମକ ଜଣେ ହିନ୍ଦୁ ରାଜାଙ୍କୁ ସେନାପତି କରି ଗୋବିନ୍ଦଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । କେତେକ ମୁସଲମାନ ସୁବାଦାର ମଧ୍ୟ ସେମାନଙ୍କ ସାଙ୍ଗେ ଯୋଗ ଦେଇଥିଲେ; କିନ୍ତୁ ସବୁ ଚେଷ୍ଟା ବୃଥା ହେଲା । ପ୍ରଥମ ଥର ଯୁଦ୍ଧରେ ସେମାନେ ହାରିଗଲେ । ସମରଭୂଇଁରେ ଶିଖମାନଙ୍କର ସାହସ ବଡ଼ ଅଦ୍ଭୁତ । ଜଗତରେ ଶିଖ ଜାତି ଗୁରୁ ବ୍ୟତୀତ କାହାକୁ ମାନେ ନାହିଁ, ସତ୍ୟ ବ୍ୟତୀତ ଆଉ କାହାକୁ ବିଶ୍ୱାସ କରେ ନାହିଁ । ସେ ଥର କରଦ ରାଜାମାନେ ଲଜ୍ଜାରେ, ଅପମାନରେ ଫେରିଗଲେ । ଏଣେ ଆନନ୍ଦ ଉତ୍ସବରେ ଆନନ୍ଦପୁର ପୂର୍ଣ୍ଣ ହେଲା । ଜାତିର ଭାଗ୍ୟବିଧାତା ଗୋବିନ୍ଦଙ୍କର ଜୟ ସଙ୍ଗୀତରେ ଅବକାଶ ଆକାଶ ନାଚି ଉଠିଲା ।

ଏଣିକି ରାଜଶକ୍ତି ମୂଳରେ ଅଘାତ ବାଜିଲା । ଆଉରଙ୍ଗଜେବ ଦାକ୍ଷିଣାତ୍ୟରେ ଥିଲେ । ପଞ୍ଜାବର ଏ ବିପ୍ଳବ ବାର୍ତ୍ତା ତାଙ୍କୁ ଅସ୍ଥିର କରିପକାଇଲା । ଶିଖ ଶକ୍ତିକି ଦବାଇବା ପାଇଁ ସେ କାଶ୍ମୀର ପ୍ରଭୃତି ବଡ଼ ବଡ଼ ସୁବାଦାରମାନଙ୍କ ପାଖକୁ ପରୁଆନା ପଠାଇଲେ । ସାମ୍ରାଜ୍ୟର ଚାରିଆଡ଼େ ହଲଚଲ ପଡ଼ିଗଲା । ଅଗଣିତ ମୋଗଲ ସୈନ୍ୟ ଆନନ୍ଦପୁର ଆକ୍ରମଣ କରିବାପାଇଁ ପଞ୍ଜାବ ଅଭିମୁଖରେ ବାହାରିଲେ । ବିପଦ ଦେଖି ଗୋବିନ୍ଦ ପଛଘୁଞ୍ଚା ଦେବାର ଲୋକ ନୁହନ୍ତି । ଆଗରୁ ତ ସେ ଏସବୁ ବିପଦକୁ ବୁକୁ ପତେଇ ବରଣ କରି ନେଇଛନ୍ତି । ତାଙ୍କ ମନର ଯେ ଅଟଳ ସଙ୍କଳ୍ପ, ସେ ହିମାଳୟ ପରି ଶକ୍ତିକୁ ବୃଥା ବାଧା ଦେଇ ପାରେ । ତାଙ୍କର ସେ ନୂତନ ଗଠିତ ଜାତି ଆଗରେ ମରଣର ଭୟ କିଛି ନୁହେଁ । ଧର୍ମ ପାଇଁ ଜୀବନ ଦେବା ତାଙ୍କ ଆଗରେ ପିଲା ଖେଳ ପରି । ସେ ଦିନ ତ ତେଗ୍ ବାହାଦୁର ହସି ହସି ପ୍ରାଣ ଦେଲେ—ତାଙ୍କରି ପୁଅ ଗୋବିନ୍ଦ ଆଜି ମୃତ୍ୟୁକୁ ଭୟ କରିବେ କିଆଁ ? ଅବଶ୍ୟ ଏ ଯୁଦ୍ଧରେ କୌଣସି ପକ୍ଷର ହାରିଜିତା ହୋଇ ନ ଥିଲେ ମଧ୍ୟ ମୁସଲମାନମାନଙ୍କ ମନରେ ଭୟ ଆସିଥିଲା । ସେମାନେ ଭାବି ନ ଥିଲେ ଯେ ଦୁର୍ବଳ ଲାଞ୍ଛିତ ଶିଖ ଜାତି ଏଡ଼େ ବେଗେ ଏପରି ପ୍ରବଳ ଭାବରେ ମାତି ଉଠିବ !

କ୍ରମେ କ୍ରମେ ଶିଖମାନଙ୍କ ଉପରେ ଶତ୍ରୁର ତୀବ୍ର ଦୃଷ୍ଟି ପଡ଼ିଲା—ବାଟରେ ଘାଟରେ ସେମାନଙ୍କୁ ହତ୍ୟା କରାଗଲା, ଠାଏ ଠାଏ ବନ୍ଦୀ କରାଗଲା । ଜାତିର ଗୃହବିବାଦରୁ ଯେପରି ବିପଦ ମାଡ଼ି ଆସିଲା । ଗୁରୁ ଗୋବିନ୍ଦ ଦେଖିଲେ—ପଠନ ପାଠନ, କଥା ବାର୍ତ୍ତାରେ ଆଉ ଜାତିର ମୁକ୍ତି ନାହିଁ । ହରିଭଜନ, ଧ୍ୟାନ, ଗାନରେ ଆଉ କାର୍ଯ୍ୟ ଚଳିବ ନାହିଁ । ପ୍ରତ୍ୟେକ ଶିଖକୁ ଗୋଟିଏ ଗୋଟିଏ ବୀର କରି ସେମାନଙ୍କ ହୃଦୟରେ ଉତ୍ସାହ, ଆତ୍ମତ୍ୟାଗ ଜଗାଇବା ଆବଶ୍ୟକ । ତେଣୁ ସେ ସର୍ବଶକ୍ତିମାନ୍ ଅକାଳପୁରୁଷଙ୍କର ପୂଜା ଆରମ୍ଭ କଲେ । *



## ଖାଲ୍‌ସା

ଶତଦ୍ରୁ ନଦୀର ନିର୍ଜନ ଉପକୂଳ—ନିବିଡ଼ ଅରଣ୍ୟରେ ପୂର୍ଣ୍ଣ, ସଂସାରର ଗୋଳମାଳ ସେଠି କିଛି ନାହିଁ । ଶାନ୍ତିମୟ ସେହି ବନ ପ୍ରଦେଶରେ ଗୋବିନ୍ଦ ଜାତିର ମୁକ୍ତି ପାଇଁ କଠୋର ଯୋଗସାଧନା ଆରମ୍ଭ କଲେ । ବାର ମାସ ପରେ ତାଙ୍କର ତପ ସାଧନା ପୂର୍ଣ୍ଣ ହେଲା । ହଠେ ସ୍ୱର୍ଗୀୟ ଜ୍ୟୋତିରେ ତାଙ୍କର ହୃଦୟ ପୂରି ଉଠିଲା । ତାଙ୍କ ଆଖି ଆଗରେ ଏକ ଜ୍ୟୋତିର୍ମୟ ମୂର୍ତ୍ତି ହସି ହସି ଉଭା ହେଲେ । ଗୋବିନ୍ଦ ଆନତ-ବଦନରେ ଧୀରେ ଧୀରେ ପ୍ରାର୍ଥନା କଲେ—

"କରହୁଁ ହୁକୁମ୍ ଅପନା ସକଲ ଦୁଷ୍ଟ ଘାୟୁଁ
ତୁରକ୍ ହିନ୍ଦୁକା ସକଲ ଝଗଡ଼ା ମିଟାଉଁ ।

* କାହା କାହା ମତରେ ଗୋବିନ୍ଦ କାଳୀପୂଜା କରିଥିଲେ; କିନ୍ତୁ ତାହା ଭୁଲ ଧାରଣା ବୋଲି ଅନେକେ କହନ୍ତି । ଗୋବିନ୍ଦ ଅନେକ ସମୟରେ ଶିଷ୍ୟମାନଙ୍କୁ ପ୍ରତିମା ପୂଜା ନ କରିବାକୁ ଉପଦେଶ ଦେଇଛନ୍ତି ।

ସବେ ସୃଷ୍ଟି ପ୍ରଜା ସୁଖୀ ହୋଯ୍ଯ ବସ୍ତେ
ମିଟେ ଦୁଷ୍ଟ ସନ୍ତାପ ଆନନ୍ଦ ଗାଜେ ।
ଏହି ଦେହ ବର ମୋହେ ସଦ୍‌ଗୁରୁ ଧ୍ୟାଉଁ
ଅସୁର ଜିତ କର ଧର୍ମ ନଓବତ ବଜାଉଁ ।''

ପ୍ରଭାତ ରବିର ପ୍ରଥମ କିରଣରେ ଦରମୁକୁଳିତ ପଦ୍ମ ପରି ଗୋବିନ୍ଦଙ୍କର ଆଖି ଦୁଇଟି ଜାଗି ଉଠିଲା । ହୃଦୟ ତାଙ୍କର ଥରିଗଲା । ଯୁଗ ଯୁଗର ବେଦନା ଜୀବନରୁ ଯେପରି ଖସି ପଡ଼ିଲା ! କିଏ ତାଙ୍କୁ ସେଠି କରୁଣା-କୋମଳ କରରେ ଆଉଁସି ଦେଇ କହିଲା—''ଯାଅ ବତ୍ସ ! ଜଗତରେ ସାଧୁମାନଙ୍କୁ ରକ୍ଷା କର । ପ୍ରିୟ ଭକ୍ତଗଣ ଶାନ୍ତିରେ ରହନ୍ତୁ ।''

ଗୋବିନ୍ଦ ସେହି ଅକାଳପୁରୁଷଙ୍କ ଠାରୁ ବର ପାଇଲା ପରେ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ । ଜାତିକି ଆତ୍ମତ୍ୟାଗର ନୂତନ ଅଭିନୟ ଦେଖାଇବାପାଇଁ ସଙ୍କଳ୍ପ କଲେ । ସେ ଆଜିକି କେତେ ଶହ ବର୍ଷ ପୂର୍ବର କଥା—ସେହି ତ୍ୟାଗ ଆଜି ଶିଖଜାତିକି ଜଗତରେ ବଡ଼ କରିଛି । ସେହି ତ୍ୟାଗ ବଳରେ ଶିଖ ଆଜି ସୁମେରୁ କୁମେରୁର ନିର୍ଜନ ପ୍ରଦେଶରେ ଅକାତରରେ ପରପାଇଁ ଜୀବନ ଦେଇ ପାରୁଛି ! ସେହି ତ୍ୟାଗ ଫଳରେ ଶାନ୍ତ ସରଳଭାବରେ ଠିଆ ହୋଇ ସେ ଧର୍ମ ପାଇଁ ଜଗତର ସକଳ ବାଧା ବିପଦକୁ ବୁକୁ ପତେଇ ସହି ପାରୁଛି ! !

ବହୁଦିନ ପରେ ପୁଣି ଦରବାର ବସିଲା । ଶତ ଶତ ଶିଷ୍ୟ ଗୁରୁଙ୍କ ମୁଖରୁ ଆଦେଶ ଶୁଣିବା ପାଇଁ ବହୁଦିନ ପରେ ଆସି ଏକାଠି ହେଲେ । ଗୁରୁଦେବ ଆସନରୁ ଉଠି କହିଲେ—''ପ୍ରିୟ ଭକ୍ତଗଣ ! ଆଜି ଜୀବନର ସନ୍ଧିବେଳ । ଦେଶ ଓ ଧର୍ମ ଛାରଖାର ହେଉଛି । ଜାତିକି ଏ ବିପଦରୁ ରକ୍ଷା କରିବା ପାଇଁ କେତୋଟି ବଳି ଲୋଡ଼ା । ଗୁରୁ ଏବଂ ଦେଶ ପାଇଁ କିଏ ଏଠି ନିଜର ଜୀବନ ବଳି ଦେବାକୁ ପ୍ରସ୍ତୁତ ଅଛ କି ?'' ଅନେକ ସମୟ ସଭା ନୀରବ ହୋଇ ରହିଲା—ସମସ୍ତେ ସମସ୍ତଙ୍କ ମୁହଁକୁ ଖାଲି ଚାହିଁ ରହିଲେ । ଏ ଆଦେଶକୁ ବୁକୁ ପତେଇବା ପାଇଁ ସମସ୍ତଙ୍କର ସାହସ ହେଲା ନାହିଁ ।

ହଠାତ୍ ଜଣେ ଭକ୍ତ ହସି ହସି ବୀରବେଶରେ ଉଠି କହିଲା "ମୋର ଜୀବନ ଖାଲି ଗୁରୁଙ୍କ କାର୍ଯ୍ୟପାଇଁ ।" ଗୁରୁ ଭକ୍ତଟିର ହାତ ଧରି ଧୀରେ ଧୀରେ ପାଖ ଘରକୁ ନେଇଗଲେ । ଆଗରୁ ସେହି ଘରେ ପାଞ୍ଚଟି ଛେଳି ଗୁପ୍ତଭାବରେ ରଖା ଯାଇଥିଲେ । ସେ କଥା ଗୁରୁଙ୍କ ଛଡ଼ା ଆଉ କିଏ ଜାଣନ୍ତି ନାହିଁ । ସେ ଘରକୁ ଯିବା ସଙ୍ଗେ ସଙ୍ଗେ ଖଡ୍ଗର ଝନ୍ ଝନ୍ ଶବ୍ଦ ହେଲା । ରଖିଥିବା ଗୋଟିଏ ଛେଳିର ଶିର ଦଳ ଦେଇ ଗୁରୁ ଖାଲି ରକ୍ତାକ୍ତ ତରବାରି ହାତରେ ବାହାରକୁ ଆସିଲେ । ଖଡ୍ଗରୁ ଟୋପା ଟୋପା ରକ୍ତ ପଡ଼ୁଛି, ଆଖିରୁ ଟୋପା ଟୋପା ଲୁହ ଗଡ଼ୁଛି, କେବେ କେବେ କପାଳ ଥରି ଯାଉଛି—ପୁଣି ଗୋବିନ୍ଦ ଆଉ ଜଣକୁ ଡାକିଲେ । ଆଉ ଜଣକ ସେହିପରି ଘର ଭିତରକୁ ନିଆ ହେଲା—ପୁଣି ତୃତୀୟର ଡାକରା ଆସିଲା । ଏ କଥା ଦେଖି ଅନେକ ଲୋକ ପ୍ରାଣଭୟରେ ସଭା ଛାଡ଼ି ଚାଲିଗଲେ । ତୃତୀୟ ଗଲା, ଚତୁର୍ଥ ଗଲା, ଶେଷକୁ ଓଡ଼ିଶାର ପୁରୀନିବାସୀ ହିମ୍ମତ ସିଂହ ନାମକ ଜଣେ ଭକ୍ତ ଗୁରୁଙ୍କ ପାଇଁ ନିଜ ଜୀବନ ଦେବାକୁ ଠିଆ ହେଲା । ପାଞ୍ଚ ଜଣ ପୂର୍ଣ୍ଣ ହେଲେ । ସେତେବେଳକୁ ବହୁତ ଭକ୍ତ ଗୋବିନ୍ଦଙ୍କୁ ପାଗଳ ଭାବି ସଭାରୁ ଯାଇ ଦୂରରେ ଠିଆ ହୋଇଥିଲେ । କିଛି ସମୟ ପରେ ଗୁରୁ ମୁକ୍ତ କରବାଳ ହାତରେ ଧରି ପାଞ୍ଚ ଜଣ ନବୀନ ସନ୍ନ୍ୟାସୀଙ୍କ ସହ ଦରବାର ବେଦୀରେ ଆସି ଠିଆ ହେଲେ ଏବଂ ସେହି ପାଞ୍ଚ ଜଣଙ୍କୁ କହିଲେ—"ମୋର ପ୍ରିୟ ଭକ୍ତଗଣ ! ତୁମ୍ଭେମାନେ ଆଜି କେବଳ ଶିଖ ନୁହଁ—ତୁମ୍ଭେମାନେ ଖାଲସା, ତୁମ୍ଭେମାନେ ସିଂହ । ଶତ୍ରୁର ଗତିରୋଧ କରିବା ପାଇଁ ଏହିପରି ସିଂହ ଜାତି ଲୋଡ଼ା । ମୁଁ ଆଜି ତୁମ୍ଭର ଗୁରୁ ନୁହେଁ । ତୁମ୍ଭ ସାଙ୍ଗରେ ବାବା ନାନକଙ୍କର ମୁଁ ଜଣେ ଭକ୍ତ । ଆମ୍ଭମାନଙ୍କ ମଧ୍ୟରେ ଆଉ କିଛି ପ୍ରଭେଦ ନାହିଁ ।"

ଏ ଦୃଶ୍ୟ ଦେଖି କାହାର ହୃଦୟ ନ ତରଳିବ ? ଯେ ଚାଲି ଯାଇ-ଥିଲେ, ଯେ ଦୂରରେ ଥିଲେ, ଗୁରୁଙ୍କୁ ଯେ ବାତୁଳ ବୋଲି ଭାବିଥିଲେ, ଦୁର୍ବଳ ପରି ପ୍ରାଣଭୟରେ ଲୁଚିଥିଲେ, ସମସ୍ତେ ଆସି ପୁଣି ଗୁରୁଙ୍କ ପାଖରେ କୃପା ଭିକ୍ଷା ମାଗିଲେ । କହିଲେ—"କ୍ଷମା କର ଗୁରୁଦେବ ! ଆଜିଠୁ ଆଉ

ବୋଲି ପାଖକୁ ନେଇଯାଅ । ଆଜିଠାରୁ ଏ ଜୀବନ ଗୁରୁଙ୍କର ।” ଗୋବିନ୍ଦ ହସି ହସି ସେମାନଙ୍କୁ ଆଶ୍ୱାସନା ଦେଲେ । ସେ ଦିନ କୋଡ଼ିଏ ହଜାର ଲୋକ ସେହି ନୂତନ ଦୀକ୍ଷା ଗ୍ରହଣ କରିବାପାଇଁ ବ୍ୟାକୁଳ ହୋଇଉଠିଲେ । ସେଥିରେ ମୁସଲମାନ ଥିଲେ, ବ୍ରାହ୍ମଣ ଥିଲେ, କ୍ଷତ୍ରିୟ ଥିଲେ—କାହାକୁ ଗୋବିନ୍ଦ ଘୃଣା ବା ଅବଜ୍ଞା କରି ନାହାନ୍ତି । ସମସ୍ତଙ୍କୁ ସେହି ମନ୍ତ୍ର ଦେଇ-ଥିଲେ, ଖଣ୍ଡା ଛୁଆଇଁ ଶପଥ କରାଇ କହିଥିଲେ—“ମୋର ପ୍ରିୟ ଶିଖ ! ଆଜିଠାରୁ ଜାତି ଜାତି ଭାବ ଭୁଲିଯାଅ । ସାନବଡ କଥା ପାଶୋରି ପକାଅ । ଭାଇକୁ ଭାଇ ବୋଲି ଡ଼ାକ । ମନେ ରଖ, ସମସ୍ତେ ଏକ ଭଗବାନଙ୍କର ସନ୍ତାନ । କାହା ପ୍ରତି ହିଂସା କର ନାହିଁ । କେଶ ରଖ, କୃପାଣ ରଖ, ତରବାରିର ପୂଜା କର । ଗୁରୁ ନିନ୍ଦକକୁ ହତ୍ୟା କର । ଶତ୍ରୁ ଆଗରେ ପଛ ଘୁଞ୍ଚା ଦିଅ ନାହିଁ । ବିପଦ ବେଳେ ସାହସ ହରାଅ ନାହିଁ । ଜୀବନ ଯାଉ,ମାତ୍ର ଧର୍ମ ଥାଉ—ମାନ ଥାଉ । ଜଗତରେ ନିଜକୁ ସିଂହ ବୋଲି ପରିଚୟ ଦିଅ । ଶିଖ କିଏ ? ଯାହା ମୁହଁରୁ ଅସତ୍ୟ କଥା ବାହାରେ ନାହିଁ, ଦେଶଦ୍ରୋହୀକୁ ଯେ ଦଣ୍ଡ ଦିଏ, ପରାଜିତ ହେଲେ ଯେ ନିରୁତ୍ସାହ ହୁଏ ନାହିଁ, ସେହି ଶିଖ । ଦେଶର ଡ଼ାକରା ଆସିଲେ ଯେ ସଂସାରର ସକଳ ବନ୍ଧନ ଛିଣ୍ଡାଇଦିଏ, ଯୁଦ୍ଧ ଯାହାର ଏକମାତ୍ର ବ୍ୟବସାୟ, ଧର୍ମ ପ୍ରଚାର ଯାହାର କେବଳ ଉଦ୍ଦେଶ୍ୟ, ଯାହାର ଦେହ ଅସ୍ତ୍ରଶସ୍ତ୍ରରେ ଶୋଭିତ, ସେହି ଏକା ଶିଖ । ଯାଅ ଖାଲସା, ଯାଅ । ଯାଅ, ଜଗତରେ ଶିଖ ଜାତିର ବିଜୟ ପତାକା ଉଡ଼ାଅ ।” ସେ ଦିନ ଦରବାର ବନ୍ଦ ହେଲା । “ଓଆହି ଗୁରୁଜୀକାଫତେ”ଶବ୍ଦରେ ପଞ୍ଜାବ ଆକାଶ ପ୍ରତିଧ୍ୱନିତ ହେଲା ।

ଏହି ଘଟଣାର ଅଳ୍ପ ଦିନ ମଧ୍ୟରେ ଗୁରୁ ଆଦେଶ ପ୍ରଚାର କଲେ ଯେ ଯେଉଁ ଶିଖ ପରିବାରରେ ଚାରିଜଣ ପୁରୁଷ ଥିବେ, ସେଥିରୁ ଦୁଇଜଣ ଗୁରୁଙ୍କ ପାଖରେ କାର୍ଯ୍ୟ କରିବେ । ସାଙ୍ଗେ ସାଙ୍ଗେ ଆଠହଜାର ଶିଖ ଯୁବକ ଆସି ଜମା ହୋଇ ପଡ଼ିଲେ । ସେ ଦିନର ସେହି ଅଶାନ୍ତ ଯୁଗରେ, ରାଜ୍ୟ ଗୋଳ-ମାଳ ମଧ୍ୟରେ ଏହି ଆଠ ହଜାର ତରୁଣ ପ୍ରାଣକୁ ନେଇ ଗୁରୁ ଗୋବିନ୍ଦ ସିଂହ ଅଜଣା ଭାବରେ ପଞ୍ଜାବରେ ଗୋଟିଏ ମହାଜାତୀୟ ଜୀବନ ଗଠନରେ

ଲାଗିଗଲେ । ସେମାନଙ୍କୁ ଉପଦେଶ ଦେଲେ, ଉତ୍ସାହ ଦେଲେ , ଖଣ୍ଡା ଧରାଇଲେ, ତା ସଙ୍ଗେ ସ୍ୱାଧୀନତାର ପତାକା ମଧ୍ୟ ଧରାଇଲେ ।

ଗୋବିନ୍ଦ ନାନା ଘଟନାରେ ଶିଷ୍ୟମାନଙ୍କୁ ଯେ ସବୁ ଉପଦେଶ ଦିଅନ୍ତି, ତାହା ଜାତି ପକ୍ଷରେ ବଡ଼ ଉପାଦେୟ । ଖାଲି ସେହି ଅଗ୍ନିମୟ ଉତ୍ସାହ ଉପଦେଶରେ ଦୁର୍ବଳ ପ୍ରାଣକୁ ସେ ଉତ୍ତେଜିତ କରୁଥିଲେ । ସେଗୁଡ଼ିକ ମଧ୍ୟରୁ କେତୋଟି ହେଉଛି—ବୀର ହୁଅ । ସେନାପତିର ଆଦେଶ ମାନି ଚଳ । ଶତ୍ରୁକୁ କଦାଚ ପିଠି ଦେଖାଅ ନାହିଁ । ବିପଦରେ ପଡ଼ିଥିବା ଲୋକକୁ ଉଦ୍ଧାର କର । ଚୋର, ଠକମାନଙ୍କ ସଙ୍ଗେ ସାଥୀ ହୁଅ ନାହିଁ । ମନେ ରଖ, ପାପଠାରୁ ପାପୀ ବଡ଼ ଭୟଙ୍କର; କାରଣ ପାପୀ ଅଳ୍ପକେ ଅନ୍ୟକୁ ପ୍ରତାରିଇ ନଏ । ମିଥ୍ୟାବାଦୀର ପାଖ ପଶ ନାହିଁ । ନିଜ ଆୟରେ ସନ୍ତୁଷ୍ଟ ରହ । ପରକୁ ଠକ ନାହିଁ । ପ୍ରତ୍ୟେକ ଶିଖ ନିଜ ଆୟର ଦଶ ଭାଗରୁ ଭାଗେ ଧର୍ମ ପାଇଁ ଦାନ କରୁ । ପବିତ୍ର ଅମୃତସରରେ ସ୍ନାନ କର । ସେହି ପବିତ୍ର ମନ୍ଦିରରେ ବସି ପରମ ପିତା ଭଗବାନଙ୍କୁ ଧ୍ୟାନ କର । ଏହିପରି ନୂଆ ଭାବରେ ଗୁରୁ ଶିଖମାନଙ୍କର ଚେତନା ଆଣିଲେ । ସେହି ଦିନଠାରୁ ସମଗ୍ର ଶିଖ ସମାଜ ଏକ ମହାଭ୍ରାତୃତ୍ୱରେ ଗଢ଼ା ହେଲା ।



## ମୋଗଲ୍ ସଙ୍ଗେ

ଏହା ପରେ ଗୋବିନ୍ଦ ଶତଦ୍ରୁ ନଦୀ କୂଳେ କୂଳେ ଲୌହଗଡ଼, ଫୁଲଗଡ଼, ଫତେଗଡ଼ ଏବଂ ଆନନ୍ଦଗଡ଼ ନାମକ ଚାରୋଟି ସୁଦୃଢ଼ ଦୁର୍ଗ ତୋଳାଇଲେ । ଦୁର୍ଗ କାର୍ଯ୍ୟ ଶେଷ ହେବାପରେ ଗୋବିନ୍ଦଙ୍କୁ ଆଉ ଅବସର ନାହିଁ । ଆନନ୍ଦପୁରକୁ ଫେରି ଆସି ନିଜର ବନ୍ଧୁକ, ତଲୁଆର, ଗୋଳା, ବାରୁଦ ପ୍ରଭୃତି ଦରକାର ବେଳେ ଯୋଗାଇବା ପାଇଁ ଗୋଟିଏ କାରଖାନା ଖୋଲିଲେ । ଏହି ସମୟରେ ପଞ୍ଜାବରେ ମୁସଲମାନମାନଙ୍କ ରାଜସ୍ୱ ଆଦାୟରେ ବାଧା ପଡ଼ିଲା । ଶିଖ ଜାତିର ନୂତନ ତେଜ ଏବଂ ଗୁରୁ ଗୋବିନ୍ଦଙ୍କର ତ୍ୟାଗ-

ଯଙ୍କ ଦେଖି ଦେଶର ପ୍ରଜାଗଣ ନୂତନ ବଳରେ ଜାଗି ଉଠିଲେ । ଦୁର୍ବଳ ସମ୍ରାଟ କ୍ରମେ କ୍ରମେ ଆପଣାର ମହତ୍ତ୍ୱ, ଅଧିକାର ବୃଦ୍ଧି ପାଇଲା ।

ଶିଖ ଜାତିକୁ ଧ୍ୱଂସ କରିବାପାଇଁ ଏଣିକି ବାରମ୍ବାର ରାଜଶକ୍ତି ପ୍ରୟୋଗ କରାଗଲା । ପ୍ରଥମେ ସମ୍ରାଟଙ୍କ ଆଜ୍ଞାରେ ସରଦାର ମିଆଁ ଖାଁ ଅସଂଖ୍ୟ ମୋଗଲ ସୈନ୍ୟ ପଞ୍ଜାବକୁ ପଠାଇଲା । ଏହି ଯୁଦ୍ଧରେ ଶିଖ ଜାତି ଶତ୍ରୁଙ୍କରେ ହିମଗୃନ୍ଦ ପ୍ରଭୃତି ପାହାଡ଼ିଆ ରାଜାମାନେ ଯୋଗ ଦେଇଥିଲେ । ସେ ଥର ପରାଜୟରେ ଲାହୋରର ସୁବା ଉତ୍ତେଜିତ ହୋଇ ଆନନ୍ଦପୁର ଆକ୍ରମଣ କଲା ; କିନ୍ତୁ ଏଥର ମଧ୍ୟ ମୋଗଲମାନେ ପରାସ୍ତ ହେଲେ ।

ଏହି ଘଟନା ପରେ ଆଉ ଦୁଇ ଗୋଟି ମହାଯୁଦ୍ଧରେ ଶିଖମାନଙ୍କ ଠିଆ ହେବାକୁ ପଡ଼ିଥିଲା । ନାନା ପ୍ରଦେଶରୁ ବଡ଼ ବଡ଼ ସୁବାଦାର, ଜାଗିରଦାର, ସରଦାରମାନେ ଏଥିରେ ମିଶିଥିଲେ । ବହୁତ ଦିନଯାଏ ଯୁଦ୍ଧ ଚାଲିଲା । ଶେଷରେ ବିଜୟ ପତାକା ବିଜୟୀ ଶିଖ ଶିବିରରେ ଉଡ଼ିଲା ।

ବାରମ୍ବାର ପରାସ୍ତ ହେବାରେ ଅପମାନିତ ହୋଇ ୧୭୦୧ ସାଲରେ ସମ୍ରାଟ୍ ପୁତ୍ର ମୋଅଜ୍ଜମ ଏକ ପ୍ରବଳ ଶକ୍ତିପୁଞ୍ଜ ସହ ପଞ୍ଜାବ ଦିଗରେ ଆସିଲେ । ଭୟ ଥିଲା, ଏହି ଥର ଶିଖ ଜାତିର ଧ୍ୱଂସ କରିବେ; କିନ୍ତୁ ଭଗବାନଙ୍କ ଇଚ୍ଛା ସ୍ୱତନ୍ତ୍ର । ମୋଗଲ ଶକ୍ତିର ପ୍ରଧାନ ସେନାପତି ଗୁରୁଙ୍କୁ ଆଗରୁ ଚିହ୍ନିଥିଲା । ଏବେ ତାଙ୍କ ବିରୁଦ୍ଧରେ ଖଣ୍ଡା ଧରିବାକୁ ତାର ଇଚ୍ଛା ହେଲାନାହିଁ । ଯୁଦ୍ଧ ଦିନ ସେ ଗୋବିନ୍ଦଙ୍କ ପକ୍ଷ ଗ୍ରହଣ କଲା । ସମ୍ରାଟ୍ ପୁତ୍ର ବାଧ୍ୟ ହୋଇ ଗୁରୁଙ୍କ ପାଖରେ ସନ୍ଧି ଭିକ୍ଷା କଲେ ।

ଏହିଭଳି ବହୁବାର ଯୁଦ୍ଧରେ ଯୋଗ ଦେଇ ଶିଖ ଗାଁ ସବୁ ଅସ୍ତ-ବ୍ୟସ୍ତ ହୋଇ ପଡ଼ିଲା । ସ୍ଥାନେ ସ୍ଥାନେ ଲୋକେ ଆଶ୍ରୟ ନ ପାଇ ଦରିଦ୍ର ବେଶରେ ବୁଲିଲେ । ବେଳେ ବେଳେ ରାଜକର୍ମଚାରୀମାନେ ସୁବିଧା ଅନୁସାରେ ସେମାନଙ୍କ ଉପରେ ନାନା ଅତ୍ୟାଚାର ଆରମ୍ଭ କଲେ । ଗୋବିନ୍ଦ ଦେଖିଲେ, ଆନନ୍ଦପୁରରେ ରହିବା ଅର୍ଥ ଅବିରତ ମୋଗଲମାନଙ୍କ

ସଙ୍ଗେ ଯୁଦ୍ଧ କରି ଲୋକଙ୍କର ଦୁଃଖ କଷ୍ଟ ବଢ଼େଇବା । ତାଛଡ଼ା ଏସବୁ ଅବସ୍ଥା ତାଙ୍କୁ ବଡ଼ ବାଧିଲା । ତେଣୁ ସେ କିଛି ଦିନ ପାଇଁ ଆନନ୍ଦପୁର ଦୁର୍ଗ ତ୍ୟାଗ କରି ଦେଶଭ୍ରମଣରେ ବାହାରିଲେ ।

ଶିଖ ଉଠିଲେ ପାଉଁଶ ଆଉ ନିଆଁକୁ ଘୋଡ଼େଇ ରଖିପାରେ ନାହିଁ । କେତେକ ଶିଷ୍ୟଙ୍କୁ ଧରି ଗୋବିନ୍ଦ ଯାତ୍ରୀ ବେଶରେ—ସାଧୁ ବେଶରେ ବାହାରିଲେ ସତ; କିନ୍ତୁ ସେ ବେଶ ତାଙ୍କୁ ଲୁଚେଇ ରଖିପାରିଲା ନାହିଁ । ସେ ତ ଆଜି ସାଧୁ ନୁହନ୍ତି ।—ଆଜି ସେ ରାଜଶକ୍ତିର ପ୍ରତିଦ୍ୱନ୍ଦ୍ୱୀ, ରଣଯଜ୍ଞର ପୁରୋହିତ—ଲୁଚିବେ କିପରି ? ଗୁପ୍ତଚରସବୁ ତାଙ୍କ ପଛେ ପଛେ ଲାଗି ରହିଲେ ।

ଏହି ଦେଶଭ୍ରମଣରୁ ଫେରିବା ବେଳେ ଥରେ ଗୋବିନ୍ଦ ବଡ଼ ବିପଦରେ ପଡ଼ିଥିଲେ । ଦିନେ ଖବର ପାଇ ଅସଂଖ୍ୟ ମୋଗଲ ସୈନ୍ୟ ତାଙ୍କୁ କୁରୁକ୍ଷେତ୍ର ନିକଟରେ ଆକ୍ରମଣ କଲେ । ସେତେବେଳେ ତାଙ୍କ ପାଖରେ କେହି ସୈନ୍ୟ ନ ଥିଲେ କି ଅସ୍ତ୍ର ଶସ୍ତ୍ର କିଛି ନ ଥିଲା । ସେ ଥର ଯଦି ଯୁଦ୍ଧ ହୋଇଥାନ୍ତା, ତେବେ ସେ ଆଉ ପ୍ରାଣ ନେଇ ଆନନ୍ଦପୁରକୁ ଫେରି ନ ଥାନ୍ତେ । ମାତ୍ର ଅକାଳପୁରୁଷଙ୍କ କରୁଣା ଅପାର । ଏ ଅସ୍ତ୍ରହୀନ ସରଳ ଉଦାର ସନ୍ନ୍ୟାସୀଙ୍କୁ ମାରିବା ପାଇଁ ଶତ୍ରୁ ସେନାପତିର ଇଚ୍ଛା ହେଲା ନାହିଁ । ସେଠି ସେ ଗୋବିନ୍ଦଙ୍କ ପ୍ରେମରେ କିଣା ହୋଇ ପଡ଼ିଲା—ଗୋବିନ୍ଦଙ୍କର ଶିଷ୍ୟ ହେଲା । ତାହା ପ୍ରେମରେ ଅନେକ ସୈନ୍ୟ ମଧ୍ୟ ସେ ଦିନ ଗୁରୁଙ୍କ ପାଖରେ ଆଶ୍ରୟ ନେଲେ । ସେ ଦିନର ଯୁଦ୍ଧ ଅଭିଯାନ ଗୁରୁଙ୍କ ପ୍ରତି ଶିଷ୍ୟର ଏକ ଅଭିନନ୍ଦନ ପରି ହୋଇଥିଲା ।

ଆନନ୍ଦପୁରରେ ପହଞ୍ଚୁ ନ ପହଞ୍ଚୁ ପୁଣି ଏକ ଯୁଦ୍ଧର ଆୟୋଜନ ହେଲା । ସରହିନ୍ଦର ସୁବାଦାର ଦଶ ହଜାର ସୈନ୍ୟ ଧରି ଆନନ୍ଦପୁର ଦୁର୍ଗ ଆକ୍ରମଣ କଲା । ଏ ସୈନ୍ୟସାଗର ଭିତରେ ପଶି ଗୁରୁଙ୍କର ବଡ଼

ପୁଣି କିଶୋର ଅଜିତ ସିଂହ ତଙ୍କ ଅଦ୍‌ଭୁତ ସାହସର ପରିଚୟ ଦେଇଥିଲେ । ସେ ଥର କେବଳ ସେହି ବାଳକଙ୍କର ଯୁଦ୍ଧ କୌଶଳରେ ଶତ୍ରୁ ପରାସ୍ତ ହୋଇଥିଲା ।



## ଆନନ୍ଦପୁର ଆକ୍ରମଣ

ରଣକ୍ଷେତ୍ରରୁ ରକ୍ତଧାର ନ ଶୁଖୁଣୁ ପୁଣି ରଣଚଣ୍ଡୀର ମହା ନିମନ୍ତ୍ରଣ ଆସିଲା । ହୀଦଗୃନ୍ଦ ପ୍ରଭୃତି କପଟୀ ବିଶ୍ୱାସଘାତକ ସ୍ୱଦେଶଦ୍ରୋହୀ ନରପତିଗଣ ଗୋବିନ୍ଦଙ୍କର ଏ ସକଳ ବିଜୟ ଗୌରବ ଆଉ ସହିପାରିଲେ ନାହିଁ—ଦଳବଦ୍ଧ ହୋଇ ଯାଇ ଦିଲ୍ଲୀ ରାଜଦରବାରରେ ଗୁରୁଙ୍କ ବିରୁଦ୍ଧରେ ନାନା ମିଥ୍ୟା ଅଭିଯୋଗ କଲେ । ରାଜପରିଷଦରେ ଚହଳ ପଡ଼ିଲା । ଭୟ ଆଶଙ୍କାରେ ଦିଲ୍ଲୀର ସିଂହାସନ ପର୍ଯ୍ୟନ୍ତ ଥରିଲା । ପଞ୍ଜାବରେ ଶାନ୍ତି ଆଣିବା ପାଇଁ ପୁଣି ଯୁଦ୍ଧର ଯୋଗାଡ଼ ଚାଲିଲା ।

କରଦ ରାଜାମାନେ ସ୍ୱଦେଶକୁ ଫେରିଆସି ଆପଣା ଆପଣା କାର୍ଯ୍ୟରେ ଲାଗିଗଲେ । ଗ୍ରାମେ ଗ୍ରାମେ ସୈନ୍ୟ ସଂଗ୍ରହ, ସ୍ଥାନେ ସ୍ଥାନେ ରଣସଜ୍ଜା—ଶିଖ ଶକ୍ତିକି ପୃଥିବୀ ବକ୍ଷରୁ ଲୋପ କରିବାପାଇଁ ରାଜ୍ୟେ ରାଜ୍ୟେ ମହା-କୋଳାହଳ ଉଠିଲା ।

ମାତ୍ର ଏ ଆୟୋଜନଠାରୁ ଶିଖ ଆୟୋଜନ ଅଧିକ ଭୟଙ୍କର । ସେ ଯେ ସତ୍ୟପାଇଁ ଆୟୋଜନ—ମରଣ ଲାଗି ଜୟଯାତ୍ରା ! ତାକୁ ରୋଧିବ କିଏ ? ପ୍ରତ୍ୟେକ ଶିଖର ଧମନୀରେ ସମୁଦ୍ରର ତରଙ୍ଗ ଖେଳୁଛି, ଚକ୍ଷୁରେ ସ୍ୱଦେଶର ଗୌରବ ଫୁଟୁଛି, ବାକ୍ୟରେ ଧର୍ମର ବିଶ୍ୱାସ ହସୁଛି ! ଆନନ୍ଦପୁର ଦୁର୍ଗରେ ସମଗ୍ର ଜାତି ଶତ୍ରୁକୁ ଅପେକ୍ଷା କରି ବସି ରହିଲା । ଯଥା-ସମୟରେ ସେ ମହାବିପ୍ଳବର ପବିତ୍ର ଦିନ ଆସି ପହଞ୍ଚିଲା । ଶତଦ୍ରୁର କୂଳେ କୂଳେ ସୈନ୍ୟ—ସଂଖ୍ୟା ନାହିଁ, ସୀମା ନାହିଁ—ଏଣେ ନିଖିଳ ଭାରତର ସକଳ ଶକ୍ତି ଏକା ଶିଖ ବିପକ୍ଷରେ ! !

ଯୁଦ୍ଧ ଆରମ୍ଭ ହେଲା—ରାଜଶକ୍ତି ସଙ୍ଗେ ପ୍ରଜାଶକ୍ତିର ତୁମୁଳ ସଂଘର୍ଷ ଚାଲିଲା । ଗୋବିନ୍ଦଙ୍କ ଗୁପ୍ତ କୌଶଳରେ ଦୁର୍ଗର ଗୁପ୍ତ ସ୍ଥାନରୁ ତୋପ ଚାଲି ଶତ ଶତ ଶତ୍ରୁ ସେନାଙ୍କୁ ଧ୍ୱଂସ କଲା । ଦିନେ ଗଲା, ଦୁଇ ଦିନ ଗଲା; ଶତ୍ରୁ ଦୁର୍ଗ ଅଧିକାର କରିପାରିଲେ ନାହିଁ । ଉପାୟଶୂନ୍ୟ ହୋଇ ଦୁର୍ଗ ଅବରୁଦ୍ଧ କରି ରହିଲେ ।

ଏ ତ ଜୀବନର ଅଗ୍ନି ପରୀକ୍ଷା । ଏହିପରି ସାତ ମାସ କଟିଗଲା । ଦୁର୍ଗରେ ଖାଦ୍ୟ ପଦାର୍ଥ ପ୍ରାୟ ଶେଷ ହେଲା । ବାହାରର ବାଟ ଶତ୍ରୁ ଦ୍ୱାରା ବନ୍ଦ । ଖାଇବାକୁ ନ ପାଇ ଅଧିକାଂଶ ସୈନ୍ୟ ଶତ୍ରୁ ସଙ୍ଗେ ସନ୍ଧି କରିବା ପାଇଁ ଡ଼କା ଛଡ଼ିଲେ । କିନ୍ତୁ ଗୋବିନ୍ଦ ସେହିପରି ଅଟଳ—ମୃତ୍ୟୁକୁ ଅଙ୍ଗୀ କରି ସନ୍ଧି ପ୍ରସ୍ତାବରେ ରାଜି ହେଲେ ନାହିଁ । ତହିଁ ଭୀରୁ ଶିଖ କେତେ "ବେଦାଉଆ" ( ଆମ୍ଭେମାନେ ଶିଖ ନୋହୁଁ ) ବୋଲି ଲେଖି ଦେଇ ଦୁର୍ଗ ଛାଡ଼ି ଚାଲିଯିବାର ଉଦ୍‌ଯୋଗ କଲେ । ଗୁରୁ ଦେଖିଲେ 'ବେଦାଉଆ'ଗଣ ଚାଲିଗଲେ ଦୁର୍ଗ ପ୍ରାୟ ଖାଲି ହୋଇଯିବ ; ଏପରିକି ଆତ୍ମରକ୍ଷା କରିବା ଅସମ୍ଭବ ହେବ । ଭାବି ଭାବି ତାଙ୍କ ବୁକୁରେ ପୁଣି ସାହସ ଆସିଲା । ପ୍ରତିଜ୍ଞା କଲେ—"ଯଦି ମରଣ ହୁଏ ତେବେ ରଣଭୂମିରେ—ଏପରି ଦୁର୍ଗଭିତରେ ନୁହେ ।"

ଦୁର୍ଗଭିତରେ ରହି ଆଉ ମୃତ୍ୟୁକୁ ଅପେକ୍ଷା କରିବାକୁ ମନହେଲା ନାହିଁ । ରାତି ରାତି ସେହି "ବେଦାଉଆ" ଶିଖମାନଙ୍କ ପଛେ ପଛେ ଅବଶିଷ୍ଟ ବିଶ୍ୱାସୀ ସୈନ୍ୟଙ୍କୁ ରଣବେଶରେ ସଜ୍ଜିତ କରି ଗୋବିନ୍ଦ ଦୁର୍ଗରୁ ବାହାରି ହେଲେ । ଭୟଙ୍କର ଗୋଳମାଳ ଆରମ୍ଭ ହେଲା । ଶତ୍ରୁସୈନ୍ୟ ବ୍ୟସ୍ତଭାବରେ ଚମକି ଉଠିଲେ । ସେହି ଅନ୍ଧାର ରାତିରେ ଧୂଳି ପଥର ଅସଂଖ୍ୟ ସୈନ୍ୟ ହଣା ହଣି ହୋଇ ମଲେ । ଗୋବିନ୍ଦ କୌଶଳରେ ଜଣେ ବିଶ୍ୱାସୀ ଭୃତ୍ୟ ହାତରେ ମାତା ଗୁଜରୀ ଏବଂ ସାନ ଦୁଇ ପୁଅଙ୍କୁ ଦୂରକୁ ପଠାଇ ଦେଇ ଚାଳିଶି ଜଣ ସୈନ୍ୟ ସହି ପୁତ୍ରଦ୍ୱୟଙ୍କୁ ଛାଡ଼ିଲେ । ଏହା ଆଗରୁ ସେ ନିଜ ପତ୍ନୀଙ୍କୁ କେତେ ଗୁପ୍ତବେଶୀ ଭକ୍ତଙ୍କ ଦ୍ୱାରା ଦିଲ୍ଲୀକି ପଠାଇ ସାରିଥିଲେ ।

ମହାବୀର ଗୋବିନ୍ଦ ବର୍ତ୍ତମାନ ଆଶ୍ରୟହୀନ । ପାଖରେ ଭକ୍ତ ନାହାନ୍ତି—ସ୍ନେହମୟୀ ମାତା ଓ ପ୍ରାଣପ୍ରିୟ ପୁତ୍ରମାନେ ଦୂର ଅଜଣା ବାଟରେ—ପତ୍ନୀ ପଥହୀନା । ଏପରି ଅବସ୍ଥାରେ ନିଜେ ଜଗତର ନିରୁଦ୍ଦେଶ୍ୟ ଯାତ୍ରାରେ ବାହାରିଲେ । ଶେଷରେ କେତେ ବନପର୍ବତ, ଗାଁଗଣ୍ଡା ପାର ହୋଇ "ଗୁମଖୋର" ନାମକ ଗୋଟିଏ ପଲ୍ଲୀରେ ଯାଇ ପହଞ୍ଚିଲେ । ସେଠାରେ ଗୋଟିଏ ଘର ଭଡ଼ା ନେଇ କିଛି ସମୟ ପାଇଁ ଆଶ୍ରୟ ନେଲେ ।

ତା ଆର ଦିନ ସନ୍ଧ ନ ପାଉଣୁ ଶତ ଶତ ଶତ୍ରୁସୈନ୍ୟ ଗୁମଖୋର ଘେରିଗଲେ । ସେ ଦିନର ଦୃଶ୍ୟ ବଡ଼ ଭୟଙ୍କର । ଗୁରୁଙ୍କର ସେହି ଚାଳିଶି ଜଣ ସୈନ୍ୟଙ୍କ ଭିତରେ ଚାଳିଶି ହଜାର ବିଦ୍ରୋହୀ ମହାବୀର ଯେପରି ମୁଣ୍ଡ ଟେକି ଉଠିଲେ । ବଡ଼ ସାହସରେ ସଂଗ୍ରାମ ପରି ସେମାନେ ଯୁଦ୍ଧ କଲେ ; କିନ୍ତୁ ବେଶୀ ସମୟ ଗଲା ନାହିଁ । ଦେଖୁ ଦେଖୁ ସେ ଅନନ୍ତ ସୈନ୍ୟସାଗର ଭିତରେ ଗୋଟି ଗୋଟି ହୋଇ ଶିଖବୀର ଲୁଚିଗଲେ—ପଞ୍ଚତିରିଶିଟି ପ୍ରାଣ ଶେଷ ହେଲା । ତାପରେ ପୁଣି ଅଜିତ !—ପ୍ରାଣପ୍ରିୟ ଅଜିତଙ୍କୁ ଗୋବିନ୍ଦ ଯୁଦ୍ଧଭୂଇଁକୁ ଛାଡ଼ିଲେ । ସେହି ଦଶା ହେଲା !—ଅଜିତ ଆଉ ଫେରିଲା ନାହିଁ । ଶେଷରେ ସାନପୁଅ "ଯୁଝାରସିଂହ"ଙ୍କୁ ପିତା ମୃତ୍ୟୁର ଆଶୀର୍ବାଦ ଦେଇ ପଠାଇଲେ । ଗଲାବେଳେ ଯୁଝାର କହିଲା—"ବାପା ! ଶୋଷ ହେଉଛି ।" ପିତା ସ୍ନେହରେ ପୁଅ ମୁଣ୍ଡରେ ହାତ ବୁଲାଇ ବୁଲାଇ କହିଲେ 'ଧନ ମୋର ! ଭାଇ ତୋର ସ୍ୱର୍ଗରେ ଅମୃତ ଧରି ତୋତେ ଅପେକ୍ଷା କରି ରହିଛି । ଯାଅ, ସେହିଠାରେ ସାଙ୍ଗ ହୋଇ ପିଇବ ।" ଆହା ! କି ମଧୁମୟ ଆଶୀର୍ବାଦ ! ଦେଶପାଇଁ, ଧର୍ମପାଇଁ ବାପ କି ପୁଅକୁ ଏଭଳି ମରଣର ଶୁଭ ଆଶୀର୍ବାଦ ଦେଇପାରେ ! !

ଏଣିକି ଆଉ ଉପାୟ ନାହିଁ । ପାଖରେ ପାଞ୍ଚ ଜଣ ମାତ୍ର ଭକ୍ତ । ବହୁତ ବିଚାର ପରେ କେବଳ ଆତ୍ମରକ୍ଷା ପାଇଁ ଗୁରୁ ଶାନ୍ତ, ସନ୍ତୋଷ ନାମକ ଦୁଇ ଜଣ ଭକ୍ତଙ୍କୁ ଯୁଦ୍ଧରେ ଲଗାଇ ଦେଇ ସାଥି ସାଥି ତାଙ୍କ ତିନି ଜଣଙ୍କ ସହ ଯୁଦ୍ଧଭୂଇଁ ଛାଡି ଚାଲି ଆସିଲେ ।

ମହାପ୍ରାଣ ଗୋବିନ୍ଦ ପଥର ଭିଖାରି ହେଲେ । ଖାଇବାକୁ ଅନ୍ନ ନାହିଁ, ପିନ୍ଧିବାକୁ ଲୁଗା ନାହିଁ, ପାଖରେ ସଙ୍ଗୀ ନାହାନ୍ତି, ହାତରେ ଅସ୍ତ୍ର ମଧ୍ୟ ନାହିଁ । ତଥାପି ଗୋବିନ୍ଦ ସେହି ଗୋବିନ୍ଦ—ସେହି ଆନନ୍ଦପୁରର ଅଟଳ ଗୋବିନ୍ଦ ।

ଚମକୋର ଛାଡି କିଛି ସମୟ ପାଇଁ ସେ ଗୋଟିଏ ଜଙ୍ଗଲରେ ଆଶ୍ରୟ ନେଲେ ; ମାତ୍ର ତାହା ସେପରି କିଛି ନିରାପଦ ନ ଥିଲା । ଜଙ୍ଗଲ ପାର ହୋଇ କିଛି ଦୂର ଗଲାପରେ ଗଣିଖାଁ ଓ ନବୀଖାଁ ନାମକ ଦୁଇ ଜଣ ମୁସଲମାନ ଭକ୍ତଙ୍କ ସହିତ ଗୋବିନ୍ଦଙ୍କର ଭେଟ ହେଲା । ସେହି ଭକ୍ତମାନଙ୍କ ଘରେ ଥିବାବେଳେ ଚମକୋରରୁ ଫେରିଥିବା ତିନି ଜଣ ସୈନ୍ୟ ଆସି ପାଖରେ ଭେଟିଲେ । ସେହି ସମୟରେ ଗୋବିନ୍ଦ କିଛି ଦିନ ପାଇଁ ଜଣେ ମୁସଲମାନ ପୀରଙ୍କ ଘରେ ରହିଥିଲେ । ପିଲାଦିନେ ସେ ତାଙ୍କର ପାଖରେ କୋରାଣ ପଢ଼ିଥିଲେ । ବର୍ତ୍ତମାନ ଏ ବିପଦ ବେଳେ ତାଙ୍କୁ ଆଶ୍ରୟଦାତା ପୀରଙ୍କ ଘରେ ମଧ୍ୟ ଖାଇବାକୁ ପଡ଼ିଲା । ଆତ୍ମରକ୍ଷା ପାଇଁ ମୁସଲମାନ ହାତରୁ ଖାଇବା ମଧ୍ୟ ଧର୍ମବିରୁଦ୍ଧ ନୁହେ ବୋଲି ପରେ ସେ ଶିଷ୍ୟମାନଙ୍କୁ ଉପଦେଶ ଦେଇଥିଲେ ।



## ଛଦ୍ମବେଶ

ବର୍ତ୍ତମାନ ପାଞ୍ଚ ଜଣ ଭକ୍ତଙ୍କ ସହିତ ଗୁରୁ ଗୋବିନ୍ଦ ଛଦ୍ମବେଶରେ ଆହୁରି ଦୂରକୁ ଚାଲିଲେ । ପୁରୁଣା ବେଶ ଛାଡ଼ି ତାଙ୍କୁ ନୂଆ ନେଳିଆ ବସ୍ତ୍ର ପିନ୍ଧିବାକୁ ହେଲା । ଆତ୍ମରକ୍ଷା ଲାଗି ଲୋକଙ୍କ ଆଗରେ ନିଜକୁ ମୁସଲମାନ ପୀର ବୋଲି ପରିଚୟ ଦେବାକୁ ପଡିଲା । ଏହିପରି ଫକୀର ବେଶରେ ଗଲାବେଳେ ବାଟରେ ତାଙ୍କୁ ଗୋଟିଏ ଘୋଡ଼ା ଏବଂ କେତୋଟି ଖଣ୍ଡା ଉପହାର ମିଳିଥିଲା ।

ଏଣେ ଆଶ୍ରୟସ୍ଥାନ ଖୋଜିବାରେ ଦୂରଦେଶରେ ଛଦ୍ମବେଶରେ ବୁଲୁଥିବା ବେଳେ ରାୟକୋଟ ନାମକ ସ୍ଥାନରେ ଗୋବିନ୍ଦ ଦୁଇ ସାନ ପୁଅଙ୍କର ମୃତ୍ୟୁ ସଂବାଦ ଶୁଣିଲେ । ସେ ସଂବାଦ ବଡ଼ ଦାରୁଣ । ଆନନ୍ଦପୁର ଯୁଦ୍ଧ ମଧ୍ୟରେ ମାତାଙ୍କ ସହ ପୁଅ ଦୁହିଙ୍କି ନିଜର ପୂଜାରୀ ହାତରେ ପଠାଇଦେଇ ଗୋବିନ୍ଦ ଚାଲି ଆସିଥିଲେ । ମାତ୍ର ଲୋଭୀ ବିଶ୍ୱାସଘାତକ ସେହି ପୂଜାରୀ ପ୍ରତିଜ୍ଞା ରକ୍ଷିପାରିଲା ନାହିଁ । ସାମାନ୍ୟ କିଛି ଟଙ୍କା ଲୋଭରେ ସରହିନ୍ଦର ନିଷ୍ଠୁର ମୁସଲମାନ ସୁବାଦାର ହାତରେ ବାଳକ ଦୁଇଟିଙ୍କି ଦେଇ ଦେଲା । ବାଳକଙ୍କୁ ପାଇ ସୁବାଦାର ତାଙ୍କୁ ମୁସଲମାନ କରିବାପାଇଁ ବହୁତ ଟଙ୍କା, ସୁନା, ରାଜପ୍ରାସାଦର ଲୋଭ ଦେଖାଇଲା ; ମାତ୍ର ଦେଶପ୍ରାଣ ଗୋବିନ୍ଦଙ୍କର ସେ ବୀର ବାଳକଦ୍ୱୟ ଉତ୍ତର ଦେଲେ—"ମନେ ରଖ, ଆମେ ଗୁରୁଗୋବିନ୍ଦ ସିଂହଙ୍କର ପୁତ୍ର—ମୃତ୍ୟୁକୁ ଭୟ କରୁ ନାହିଁ ।" ସୁବାଦାରର ଆଉ ଧୈର୍ଯ୍ୟ ରହିଲା ନାହିଁ । ଦୁଇଟି ସରଳ ଉଦାର ବାଳକଙ୍କୁ ସମ୍ରାଟଙ୍କ ପାଖକୁ ନେଇ ମଝିରେ ରଖି ଚାରିପାଖରୁ ଇଟାଖମ୍ବ ଉଠାଇ ଦେଲା । ସେ ବୀରପ୍ରାଣ ଦୁଇଟି ଖମ୍ବଭିତରେ ସେହିଠାରେ ଜୀବନ୍ତ ସମାଧିରେ ଚିରକାଳ ପାଇଁ ଶୋଇ ରହିଲେ ।

ରାୟକୋଟଠାରେ କିଛି ଦିନ ରହି ଗୋବିନ୍ଦ ପୁଣି ଏକ ମହାବିପ୍ଳବର ନୂତନ ପତାକା ଉଡ଼ାଇ ଉଡ଼ାଇ ଦେଶ ଦେଶାନ୍ତରରେ ବିପ୍ଳବମନ୍ତ୍ର ପ୍ରଚାର କରିବାପାଇଁ ବାହାରିଲେ । ବାଟ ନାହିଁ, ଅବାଟ ନାହିଁ, କେତେଠାରେ ତାଙ୍କୁ କେତେ କଷ୍ଟ ସହିବାକୁ ପଡ଼ୁଛି । ନିରାଶ୍ରୟ ଭାବରେ ଗଛମୂଳେ ରହୁଛନ୍ତି, ଶତ୍ରୁ ପ୍ରତୀକ୍ଷାରେ କେତେ ବିନିଦ୍ର ରଜନୀ ମୁହୂର୍ତ୍ତକ ପରି ବହିଯାଉଛି; କିନ୍ତୁ ସେ ଦୁଃଖକୁ ଦିନେ ହେଲେ ସେ ଜୀବନରେ ବିପଦ ବୋଲି ମଣି ନାହାନ୍ତି । ଏହି ସମୟରେ ସେ ତାଙ୍କ ଜୀବନର ବିଚିତ୍ର ଘଟଣାପୂର୍ଣ୍ଣ 'ବିଚିତ୍ର ନାଟକ' ଗ୍ରନ୍ଥଟି ଲେଖିଥିଲେ । ସେ ସବୁ ପଦ୍ୟରେ ଲେଖା । ତାକୁ ପଢ଼ିଲେ ଗୋବିନ୍ଦଙ୍କର ଅସାଧାରଣ ପାଣ୍ଡିତ୍ୟର ପରିଚୟ ମିଳେ । ସେଥିରେ ସେ ଠାଏ ଠାଏ ନିଜେ ଅକାଳପୁରୁଷଙ୍କର ପ୍ରତିନିଧି ବୋଲି ଲେଖି ପକାଇଛନ୍ତି ।

ଛଦ୍ମବେଶରେ ମାଳବ ପ୍ରଦେଶରେ ପ୍ରଚାର କରି ବୁଲୁଥିବେଳେ ଶତ ଶତ ଭକ୍ତ ଆସି ତାଙ୍କ ସାଙ୍ଗରେ ଯୋଗ ଦେଲେ । ଅସ୍ତ୍ର ଶସ୍ତ୍ର ଘୋଡ଼ା ପ୍ରଭୃତି ଯୁଦ୍ଧ ଉପକରଣର ଆଉ ଅଭାବ ରହିଲା ନାହିଁ । ଠିକ୍ ଏହି ସମୟରେ ପଞ୍ଜାବ ପ୍ରଦେଶରେ ମୁସଲମାନମାନଙ୍କ ଅତ୍ୟାଚାର ପ୍ରବଳ ହୋଇ ଉଠିଲା । ଗୋବିନ୍ଦ ଏହାର ପ୍ରତୀକାର କରିବା ପାଇଁ—ସାଧୁ, ଫକୀରମାନଙ୍କୁ ଉଦ୍ଧାର କରିବା ପାଇଁ ପୁଣି ନିଜର ଭକ୍ତମାନଙ୍କୁ ଅସ୍ତ୍ର ଧରିବାକୁ ଆଦେଶ ଦେଲେ । ଦେଖୁଁ ଦେଖୁଁ ଅଳ୍ପ ଦିନ ମଧ୍ୟରେ ସରଳ, ନିରୀହ, ଶାନ୍ତ ଭକ୍ତବୃନ୍ଦ ଗୋଟିଏ ଗୋଟିଏ ପ୍ରବଳ ମହାବୀର ହୋଇ ଠିଆ ହେଲେ । ମୋଗଲ-ଆକାଶରେ ପୁଣି ଏକ ଧୂମକେତୁର ନୂତନ ଅଭିଯାନ ଚାଲିଲା । ସୈନ୍ୟଗଣ ନବଜୀବନ ପାଇ ଆଗକୁ ଚାଲିଲେ । ଏ ସମ୍ବାଦ ସରହିନ୍ଦର ସୁବାଦାର କାନକୁ ଗଲା । ସେ ଶିଖ ଦମନ ପାଇଁ ତତ୍‌କ୍ଷଣେ ସବୁ ଯୋଗାଡ଼ କରି ବସିଲା ।



## ପତ୍ର

ଏ ମଧ୍ୟରେ ଆଉରଙ୍ଗଜେବ ଦାକ୍ଷିଣାତ୍ୟରେ ଥାଇ ଗୁରୁ ଗୋବିନ୍ଦ ସିଂହଙ୍କୁ ଡକାଇ ପଠାଇଲେ । ଦୂତଠାରୁ ଏ ସମ୍ବାଦ ପାଇ ଗୁରୁ "ଦୀନା" ନାମକ ଗ୍ରାମରୁ ପାର୍ଶି ଭାଷାରେ ସମ୍ରାଟଙ୍କ ପାଖକୁ ଯେଉଁ ପତ୍ର ଲେଖି-ଥିଲେ, ସେଥିରେ ଲେଖାଥିଲା—"ମୁଁ ଯେଉଁ ଗୁରୁଗାଦୀରେ ବସିଛି, ଦେଶରେ ଧର୍ମ ଓ ଶାନ୍ତି ସ୍ଥାପନ କରିବା ତାର ଉଦ୍ଦେଶ୍ୟ । ରାଜ୍ୟଲାଭ ବା ଧନପ୍ରାପ୍ତି ମୋର ଇଚ୍ଛା ନୁହେ । ତଥାପି ଆପଣଙ୍କ କର୍ମଚାରିଗଣ ଅକାରଣରେ ମୋ କାର୍ଯ୍ୟରେ ବାଧା ଦେଉଛନ୍ତି । ଆପଣ ଅନ୍ୟାୟଭାବରେ ପରମେଶ୍ୱରଙ୍କର ଏତେ ପ୍ରିୟ ସନ୍ତାନଙ୍କୁ ନାଶ କରୁଛ । ଆଉରଙ୍ଗଜେବ ! ତୁମେ ଭଗବାନଙ୍କୁ ଚିହ୍ନ ନାହିଁ । ମହମ୍ମଦଙ୍କର ତୁମେ ପ୍ରକୃତ ଭକ୍ତ ନୁହ । କାରଣ ଯେ ନିଜ ଧର୍ମରେ ଚଳେ, ସେ କେବେ ତାର ପ୍ରତିଜ୍ଞା ଭାଙ୍ଗେ ନାହିଁ । ତୁମର ଧର୍ମଶାସ୍ତ୍ର କୋରାନରେ ପ୍ରକୃତ ବିଶ୍ୱାସ, ପ୍ରତିଜ୍ଞା କାହାକୁ କହନ୍ତି ତୁମେ ଜାଣ ନାହିଁ ।

ଆଜି ଯଦି ଏଇଠି ମହମ୍ମଦ ଥାଆନ୍ତେ, ତାହାହେଲେ ମୁଁ ନିଜେ ଯାଇ ତୁମର ଏଇ ବିଶ୍ୱାସଘାତକତା ତାଙ୍କୁ ଜଣାଇ ଦେଇ ଆସନ୍ତି !

"ସକଳ ଜଗତର ଅଧୀଶ୍ୱର ଭଗବାନଙ୍କର ମୁଁ ଜଣେ ଚାକର । ମୋର ଜୀବନ ପର୍ଯ୍ୟନ୍ତ ଦେଇ ତାଙ୍କ ଆଦେଶ ମାନିବାକୁ ମୁଁ ପ୍ରସ୍ତୁତ ଅଛି । ଭଗବାନଙ୍କୁ ଚିହ୍ନିବା ତୁମର କର୍ତ୍ତବ୍ୟ । ପରକୁ ଘୃଣା କରିବାକୁ ତୁମକୁ ସେ ଆଦେଶ ଦେଇ ନାହାନ୍ତି । ସମ୍ରାଟ୍ ! ତୁମେ ରାଜ୍ୟର ରାଜସିଂହାସନରେ ବସିଛ; କିନ୍ତୁ ଧିକ୍ ତୁମର ଚରିତ୍ରକୁ । ଆଉରଙ୍ଗଜେବ ! ଅବିବେକୀ ହୁଅନା ! ଭଗବାନଙ୍କୁ ଭୟ କର । ସେହି ଦୀନବନ୍ଧୁ—ସେହି ଅନନ୍ତ ଜଗତର ରାଜା ।

"ମାନୁଛି, ଆଉରଙ୍ଗଜେବ ! ଧନ୍ୟ ତୁମେ; ସମ୍ରାଟ୍ ଅଟ, ବୀର ଅଟ, ବୁଦ୍ଧିମାନ୍ ଅଟ; କିନ୍ତୁ ଧର୍ମାନ୍ଧ ତୁମେ, ବିଶ୍ୱାସଘାତକ ତୁମେ । ଯେତେବେଳେ ତୁମେ ସୈନ୍ୟବଳକୁ ଚାହିଁଥାଅ, ମୁଁ ଭଗବାନଙ୍କ ମହିମା ଦେଖୁଥାଏ । ତୁମେ ବିପୁଳ ସାମ୍ରାଜ୍ୟ ଦେଖି ଗର୍ବ ବୋଧ କଲାବେଳେ ମୁଁ ଭଗବାନଙ୍କ ଅନନ୍ତ ରାଜ୍ୟକୁ ଦେଖି ଗର୍ବ କରୁଥାଏ । ତୁମେ ବଳବାନ୍ ହୋଇପାର; କିନ୍ତୁ ଦୁର୍ବଳକୁ ଘୃଣା କର ନାହିଁ । ସେହି ଅକାଳପୁରୁଷଙ୍କ ଆଗରେ ମୁଁ ରାଜା ମାନେ ନାହିଁ, ରାଜ୍ୟ ମାନେ ନାହିଁ । ମୁଁ ଶିବ ମାନେ ନାହିଁ, ବ୍ରହ୍ମା ମାନେ ନାହିଁ । ପାପୀ ଯେତେ ପ୍ରବଳ ହେଉ, ମୁଁ ତାକୁ ଧ୍ୱଂସ କରିବାକୁ ପ୍ରସ୍ତୁତ । ପ୍ରଭୁ ଆଦେଶ ଦେଇଛନ୍ତି—ସତ୍ୟ ପାଇଁ, ମୁକ୍ତି ପାଇଁ, ସାଧୁ ପାଇଁ, ଫକୀର ପାଇଁ ଜଗତରେ ମୁଁ ପ୍ରଳୟ ଆଣିପାରେ । ଶାନ୍ତ ହୁଅ ଆଉରଙ୍ଗଜେବ ! ଦିନେ ସେହି ଭଗବାନ ସବୁ ବୁଝିବେ ।"



## ମୁକ୍ତିସର

ସମ୍ରାଟଙ୍କ ପାଖକୁ ପତ୍ର ପଠାଇବା ପରେ ଗୋବିନ୍ଦ "ଦୀନା" ଗ୍ରାମ ଛାଡିଲେ । ଏହାପରେ କୌଣସିଠାରେ ତାଙ୍କୁ ସ୍ଥିର ହୋଇ ରହିବାକୁ

ପଡ଼ ନାହିଁ । ଗ୍ରାମରୁ ଗ୍ରାମାନ୍ତର, ଅରଣ୍ୟରୁ ଅରଣ୍ୟ ପାର ହୋଇ ସେ ନୂତନ ସୈନ୍ୟଦଳ ଗଠନ କରିବାକୁ ଲାଗିଲେ ।

ଏଣେ ଯେଉଁ ଶିଖଗଣ ଆନନ୍ଦପୁର ଯୁଦ୍ଧରେ ଦୁର୍ଗ ଛାଡ଼ି ପ୍ରାଣଭୟରେ ଚାଲି ଯାଇଥିଲେ, ଘରେ ପହଞ୍ଚିବା ମାତ୍ରେ ସେମାନଙ୍କର ଅପମାନର ଆଉ ସୀମା ରହିଲା ନାହିଁ । ସମାଜରୁ ଅଲଗା ହୋଇ ରହିଲେ । ଗାଁ ଗାଁ ଲୋକେ ନିନ୍ଦା କଲେ, ଘରେ ସ୍ତ୍ରୀମାନେ ଘୃଣା କଲେ । ଜାତି ବାହାର ହୋଇ ସେମାନଙ୍କ ପ୍ରାଣରେ ବଡ଼ ଅନୁତାପ ଆସିଲା । ଏହିପରି ସମୟରେ ଯେତେବେଳେ ଗୁରୁଙ୍କର ନୂତନ ମନ୍ତ୍ର ଦେଶରେ ପ୍ରଚାର ହେଲା, "ଭାଗୀ" ନାମକ ଜଣେ ଶିଖସ୍ତ୍ରୀ ଆପଣାର କୁଳମହତ୍ତ୍ୱ ପଛରେ ପକାଇ ରଣରଙ୍ଗିଣୀ ବେଶରେ ଗୁରୁଙ୍କୁ ସାହାଯ୍ୟ କରିବା ପାଇଁ ବାହାରି ପଡ଼ିଲା । ଅବଳାର ଏ ଉତ୍ତେଜନାରେ ଆଗର ସେହି 'ବେଦାଉଆ' ଶିଖମାନେ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ପୂର୍ବକୃତ ପାପର ପ୍ରାୟଶ୍ଚିତ୍ତ ପାଇଁ ଦଳେ ଗୁରୁଙ୍କ ସାହାଯ୍ୟ ଲାଗି ବାହାରି ପଡ଼ିଲେ । ଗୋବିନ୍ଦ ସେତେବେଳକୁ ଶତ୍ରୁର ପ୍ରବଳ ଆକ୍ରମଣ ଭିତରେ । ସରହିନ୍ଦର ସୁବାଦାର ଅସଂଖ୍ୟ ସୈନ୍ୟ ଧରି ମାଡ଼ି ଆସୁଥିଲା । ଶିଖସୈନ୍ୟ ଜଙ୍ଗଲର ଏକ ଡିପ ଜାଗାରେ ଶତ୍ରୁକୁ ଅପେକ୍ଷା କରି ରହିଥିଲେ । 'ବେଦାଉଆ'ଗଣ ସେହି ସମୟରେ ସେଠାରେ ପହଞ୍ଚିଲେ ।

ଗୁରୁଙ୍କପାଇଁ ପ୍ରାଣ ଦେବାର ସେହି ଉପଯୁକ୍ତ ସମୟ ବିଚାରି ହଠାତ୍ 'ଭାଗୀ' ସହିତ ସେହି ବେଦାଉଆ ଶିଖମାନେ ଶତ୍ରୁ ଆଗରେ ମହାବିକ୍ରମରେ ଖଣ୍ଡା ଚଳାଇଲେ । ଆଉ ମରଣକୁ ଭୟ କାହିଁକି ? ଗୁରୁଙ୍କ ପାଇଁ, ପାପର ପ୍ରାୟଶ୍ଚିତ୍ତ ପାଇଁ ଦେଶଛଡ଼ା, ଘରଛଡ଼ା ହୋଇ ଆସିଛନ୍ତି । ଅଳ୍ପ ସମୟ ମଧ୍ୟରେ ସମସ୍ତ "ବେଦାଉଆ" ରଣଭୂମିର ମହାକୋଳାହଳ ଭିତରେ ଚିରକାଳ ପାଇଁ ଶୋଇ ପଡ଼ିଲେ । ଏହି ସମୟରେ ପ୍ରବଳ ଝଡ଼ ଆରମ୍ଭ ହେଲା । ଶତ୍ରୁସୈନ୍ୟ ଛିନ୍ନ ଭିନ୍ନ ଭାବରେ ଫେରିଗଲେ ।

ଯୁଦ୍ଧ ପରେ ଗୁରୁ ସମରକ୍ଷେତ୍ରରେ ପହଞ୍ଚି ପୂର୍ବ ପରିଚିତ ବେଦାଉଆ-ମାନଙ୍କୁ ଚିହ୍ନିପାରିଲେ । ହୃଦୟ ତାଙ୍କର ଆଶୀର୍ବାଦରେ ପୂରି ଉଠିଲା । ସେ

ମୃତ ଶରୀରଗୁଡ଼ିକୁ ଥରେ ଥରେ ପ୍ରେମରେ ଆଲିଙ୍ଗନ କଲେ । ଆପଣାର ଧର୍ମ ଲାଗି, ପବିତ୍ର ସତ୍ୟ ଲାଗି କେତେଗୁଡ଼ିଏ ସାଧୁ ରକ୍ତରେ ଥାନଟି ପବିତ୍ର ହେଲା । ଗୋବିନ୍ଦ ଏ ଘଟଣାର ସ୍ମୃତିରକ୍ଷା ପାଇଁ ସ୍ଥାନଟିର ନାଁ "ମୁକ୍ତସର" ଦେଲେ । ଆଜିକାଲି "ମୁକ୍ତସର" ଶିଖ ଜାତିର ଗୋଟିଏ ପବିତ୍ର ତୀର୍ଥ ।

ମୁକ୍ତସର ଯୁଦ୍ଧ ପରେ ଗୋବିନ୍ଦଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ଫିଟିଲା । ଦେଶର ବଡ଼ ବଡ଼ ରାଜା ଜମିଦାରମାନଙ୍କ ପାଖରେ ସମ୍ମାନ ଖୁବ୍ ବଢ଼ିଲା । ନାନା ଦିଗରେ ଲୋକେ ତାଙ୍କୁ ସାହାଯ୍ୟ କଲେ । କିନ୍ତୁ ଏ ସବୁ ଗୌରବ ସରହିନ୍ଦର ସୁବାଦାର ଦେହରେ ଗଲା ନାହିଁ । ପ୍ରବଳ ଶିଖ-ବାହିନୀକି ଦମନ କରିବା ମଧ୍ୟ ତାର ଶକ୍ତିର ଦୂରରେ । ଆଉ କୌଣସି ଉପାୟ ନ ଦେଖି ସୁବାଦାର ସମ୍ରାଟ୍ ଅଉରଙ୍ଗଜେବଙ୍କର ସାହାଯ୍ୟ ଭିକ୍ଷା କଲା ।



## ନାଭା ଓ ପାତିଆଲା

ମୁକ୍ତସରଠାରୁ ଫେରି ଯାଇ ଗୁରୁ କେତେ ଦିନ ଦମଦମା ନାମକ ସ୍ଥାନରେ ରହିଲେ । ସେହି ସମୟରେ ଶତ୍ରୁ ଆକ୍ରମଣର ଆଉ କିଛି ଆଶଙ୍କା ନ ଥିଲା । ନାନା ପ୍ରଦେଶରୁ ଭକ୍ତମାନେ ଆସି ଗୁରୁଦର୍ଶନ ପାଇଁ ସେଠି ଜମା ହେଲେ ।

ଦିନେ ଗୋବିନ୍ଦ ଶିଷ୍ୟମାନଙ୍କୁ ଧରି ସଭା କରି ବସିଛନ୍ତି, 'ରାମା' ଓ 'ତିଲୋକା' ନାମକ ଦୁଇ ଜଣ ଶିଖ କେତେକ ଉପହାର ଦ୍ରବ୍ୟ ନେଇ ଆସି ପହଞ୍ଚିଲେ । ଗୁରୁ ଆଗରୁ କେବେ ତାଙ୍କୁ ଚିହ୍ନି ନ ଥିଲେ; ମାତ୍ର ସେମାନେ ଅନେକ ଦିନରୁ ଗୁରୁଙ୍କର ପରମ ଭକ୍ତ ହୋଇ ସାରିଥିଲେ । ଯେଉଁ ଦିନ ଚମକୋରଠାରେ ଉଭୟଙ୍କର ଯୁଦ୍ଧ ଲାଗିଥିଲା, କିଶୋର, ଅଜିତ ଏବଂ ଯୁଝାର ଚିରକାଳପାଇଁ ଆଖି ବୁଜି ଦେଇଥିଲେ, ଏହି ଦୁଇଟି ଭକ୍ତ ସେ ଦିନ କାହାରି

ସେଠି ପାଗଳ ପରି ଖୋଜୁଥିଲେ । ଯେତେବେଳେ ମୃତ ଅଜିତ ଏବଂ ଯୁଝାର ତାଙ୍କ ଆଖିରେ ପଡ଼ିଲେ, କାନ୍ଦି କାନ୍ଦି ଏମାନେ ତାଙ୍କୁ କୋଳରେ ଧରି ଦୂରକୁ ବୋହି ନେଇଥିଲେ । ଏହିମାନଙ୍କ ଦ୍ୱାରା ଗୁରୁପୁତ୍ରଙ୍କର ଉପଯୁକ୍ତ ମୃତସଂସ୍କାର ହୋଇଥିଲା । ତାପରେ ସେମାନେ ଆଉ ଗୁରୁଙ୍କର ଦେଖା ସାକ୍ଷାତ୍ ପାଇ ନ ଥିଲେ ।

ଏହିସବୁ କଥା ଗୋବିନ୍ଦ ଯେତେବେଳେ ସେହି ଦୁଇ ଭକ୍ତଙ୍କଠାରୁ ଶୁଣିପାରିଲେ, ଲୁହରେ ତାଙ୍କ ଆଖି ଛଳଛଳ ହୋଇଗଲା । ଆଦରରେ ତାଙ୍କୁ ପାଖରେ ବସାଇ କହିଲେ—"ମୁଁ ଏ ଉପକାର ତୁମର ଶୁଝିବି କିପରି ? ଭକ୍ତ ! ତୁମର ଇଚ୍ଛା ମୋ ଆଗରେ ଜଣାଅ । ମୁଁ ତୁମକୁ କଅଣ ଦେଇପାରିବି ?" ଶିଖ ଦୁଇଟି କହିଲେ—"ଗୁରୁଦେବ ! ଆଉ ଜୀବନରେ ମାଗିବାକୁ କିଛି ନାହିଁ । ଅତ୍ୟାଚାରୀ ମୋଗଲମାନଙ୍କ ଦାଉ ସହିପାରିଲୁ ନାହିଁ । ତାଙ୍କ ଭୟରେ ବିଲରେ ଫସଲ ରହିଲା ନାହିଁ କି ଘରେ ସମ୍ପତ୍ତି ମଧ୍ୟ ରହିଲା ନାହିଁ । ଏଥିରୁ ଆମକୁ ମୁକ୍ତ କର !"

ଏ କଥା ଶୁଣି ଗୁରୁ ଗମ୍ଭୀର ଭାବରେ କହିଲେ—"ସାହସ ଧର, ଏଣିକି ତୁମ ଉପରେ କେହି ଆଉ ଅତ୍ୟାଚାର କରିପାରିବେ ନାହିଁ । ତୁମମାନଙ୍କର ଆସନ ଆଜିଠାରୁ ଦୃଢ଼ ହେଲା । କୌଣସି ଶତ୍ରୁ ତୁମକୁ ଲୋପ କରିପାରିବ ନାହିଁ ।" ଏହି ଦୁଇ ଶିଖ ଆଜିକାଲି ନାଭା ଓ ପାଟିଆଲା ରାଜବଂଶର ଆଦିପୁରୁଷ । ଶିଖମାନଙ୍କର ବିଶ୍ୱାସ, ଗୁରୁଙ୍କ ଆଦେଶ କେବେ ଅନ୍ୟଥା ହୁଏ ନାହିଁ । ଜଗତରେ ଶିଖ ଜାତି ଥିବାଯାଏ ସେହି ବରପ୍ରାପ୍ତ ଭକ୍ତଙ୍କର ବଂଶଧରଗଣ ସେହିପରି ସେହି ରାଜ୍ୟମାନଙ୍କରେ ରାଜତ୍ୱ କରୁଥିବେ । ଆଜିକାଲି ଏହି ରାଜଗାଦୀରେ ଗୋବିନ୍ଦଙ୍କର ସେ କାଳର କେତେ ବ୍ୟବହାର ଜିନିଷ ଶିଖମାନଙ୍କଦ୍ୱାରା ପବିତ୍ର ଭାବରେ ପୂଜା ପାଉଛି । ଏହି ବଂଶର ରାଜାମାନଙ୍କୁ ଅନେକ ଶିଖ ଗୁରୁପରି ଭକ୍ତି କରନ୍ତି ।



# ଶେଷ ଜୀବନ

ବୃଦ୍ଧ ଆଉରଙ୍ଗଜେବ ବର୍ତ୍ତମାନ ସୁଦୂର ଦାକ୍ଷିଣାତ୍ୟରେ । ଶରୀରରୁ ବଳ ଖସିଛି, ମନରୁ ଗର୍ବ ଲୁଚିଛି, ହୃଦୟର ଦମ୍ଭ ଚୂର୍ଣ୍ଣ ହୋଇଛି, ଜୀବନର ସୁଖ ସଂସାର ଛାରଖାର ହୋଇ ପଡ଼ିଛି । ଖାଲି ସେହି ଜୀବନର ଭିତରେ ବାହାରେ ଅଛି ଅନୁତାପ—ଯୌବନର ଗଭୀର ଅନୁତାପ । କ୍ଷଣେ କ୍ଷଣେ ପିତାଙ୍କ କଙ୍କାଳ ମୂର୍ତ୍ତି ତାଙ୍କ ଆଖି ଆଗରେ ନାଚି ଯାଉଛି, ଭାଇମାନଙ୍କର ପ୍ରେତ ଛାୟା ଜୀବନକୁ ଚମକେଇ ଦେଉଛି । ଯାହା ଦିଶୁଛି ସବୁ ଅଶାନ୍ତିମୟ, ଯାହା ଶୁଭୁଛି ସବୁ ହାହାକାରମୟ । ତେଣୁ ଏତେ ଦିନପରେ ମନ ବୁଝିଛି, ପାପର ପ୍ରାୟଶ୍ଚିତ୍ତ ପାଇଁ ହୃଦୟ ଆକୁଳ ହୋଇଛି । ମୃତ୍ୟୁର କିଛି ଦିନ ପୂର୍ବେ ବୃଦ୍ଧ ସମ୍ରାଟ୍ ପୁଅ ପାଖକୁ ଖଣ୍ଡିଏ ଚିଠି ଲେଖିଥିଲେ—"ପୁତ୍ର ! ଆଶୀର୍ବାଦ କରୁଛି, ଶାନ୍ତିରେ ରହ । ମୁଁ ବର୍ତ୍ତମାନ ଶକ୍ତିହୀନ ହୋଇ ମରୁଛି । ଜୀବନରେ ଯାହା ପାପ କରିଛି, ଦେଖୁଛି ଏ ଜୀବନରେ ସେ ସବୁର ପ୍ରାୟଶ୍ଚିତ୍ତ ନାହିଁ । ଧାର୍ମିକ ପ୍ରତି, ପୁତ୍ର ପ୍ରତି, ଭାଇ ପ୍ରତି ଯେ ଯତ୍ନ କରିବା କଥା, ତାହା ମୁଁ କରି ନାହିଁ । ମୋତେ ବର୍ତ୍ତମାନ ଜଗତ୍ ଅନ୍ଧକାରମୟ ଦିଶୁଛି । ବତ୍ସ ! ତୋତେ ସତର୍କ କରି ଦେଉଛି, କେବେ ଧାର୍ମିକର ଅବମାନନା କରିବୁ ନାହିଁ । ଥାଅ ବତ୍ସ ! ମୋର ପାପମୟ ଜୀବନ-ତରୀ କାଳ-ସାଗରରେ ଭସାଇ ଦେଉଛି ।"

ଜୀବନର ଏମିତି ସନ୍ଧି ସମୟରେ ଗୁରୁ ଗୋବିନ୍ଦଙ୍କ ବିରୁଦ୍ଧରେ ସରହିନ୍ଦର ସୁବାଦାରଠାରୁ ପତ୍ର ପାଇ ଆଉରଙ୍ଗଜେବଙ୍କ ମନ ଆହୁରି ବଦଳିଗଲା । ସେ ସୁବାଦାରଙ୍କ ପ୍ରତି ବିରକ୍ତ ହୋଇ ଉତ୍ତରରେ ଲେଖି-ଥିଲେ—"ଗୁରୁଙ୍କର ଇଚ୍ଛା ଅନୁସାରେ ଦେଶରେ ତାଙ୍କୁ କାର୍ଯ୍ୟ କରିବାକୁ ଛାଡ଼ିଦିଅ । କେହି ବାଧା ଦିଅ ନାହିଁ ।" ଏହା ପରେ ପରେ ଗୁରୁଙ୍କ ସହିତ ଦେଖା କରିବା ଇଚ୍ଛାରେ ସେ ଜଣେ ଦୂତ ପଠାଇଲେ । ଦୂତ ହାତରୁ ଚିଠି ପାଇ ଗୁରୁ ୫୦୦୦ ସୈନ୍ୟ ସହ ଦାକ୍ଷିଣାତ୍ୟ ବାହାରିଲେ । ମାତ୍ର ବାଟରେ ଆଉରଙ୍ଗଜେବଙ୍କ ମୃତ୍ୟୁ ସମ୍ବାଦ ପାଇ ପୁଣି ଉତ୍ତରକୁ ଫେରି ଆସିଲେ ।

ସମ୍ରାଟଙ୍କ ମୃତ୍ୟୁ ପରେ ତାଙ୍କର ଦୁଇ ପୁଅଙ୍କ ମଧ୍ୟରେ ସିଂହାସନ ଲାଗି ଗୋଳମାଳ ଲାଗିଲା । ବାହାଦୂର ସାହ ସେହି ଯୁଦ୍ଧରେ ଯୋଗ ଦେବା ପାଇଁ ଗୁରୁ ଗୋବିନ୍ଦଙ୍କ ସାହାଯ୍ୟ ଲୋଡିଥିଲା । ଗୋବିନ୍ଦଙ୍କ ସାହାଯ୍ୟରେ ବାହାଦୂର ଶେଷରେ ଜୟୀ ହୋଇ ଦିଲ୍ଲୀ ସିଂହାସନରେ ବସିଲା । ନୂତନ ସମ୍ରାଟଙ୍କ ଆଦର ଅଭ୍ୟର୍ଥନାରେ ଗୁରୁ କିଛି ଦିନ ଆଗ୍ରାରେ ଯାଇ ରହିଲେ । ଏହି ଦିନଠାରୁ ସେ ଆଉ କୌଣସି ଯୁଦ୍ଧରେ ଯୋଗ ଦେଇ ନାହାନ୍ତି । ଜୀବନର ଅବଶିଷ୍ଟ ସମୟ ସେ ଧର୍ମଚର୍ଚ୍ଚା, ଭଗବାନଙ୍କ ସେବାରେ କଟାଇଥିଲେ ।

କିଛି ଦିନ ପରେ ପତ୍ନୀ ଦୁଇଙ୍କି ଦିଲ୍ଲୀରେ ରଖାଇ ଦେଇ ଗୋବିନ୍ଦ ଦକ୍ଷିଣ ଦେଶ ଯିବାକୁ ବାହାରିଲେ । ସାଙ୍ଗରେ ସମ୍ରାଟ୍ ବାହାଦୂର ସାହ ମଧ୍ୟ ଥିଲେ । ମାତ୍ର ହଠାତ୍ ରାଜପୁତାନାରେ ବିଦ୍ରୋହ ଦମନ କରିବାକୁ ସଙ୍ଗି-ବାରୁ ବାହାଦୂରଙ୍କୁ ବାଟରୁ ଫେରିବାକୁ ପଡିଲା । ଗୁରୁ ଗୋବିନ୍ଦ ଭକ୍ତ ଏବଂ ସୈନ୍ୟମାନଙ୍କ ସହ ଜୟପୁର, ଯୋଧପୁର, ଉଦୟପୁର ପ୍ରଭୃତି ରାଜ୍ୟ ମଧ୍ୟ ଦେଇ ସୁଦୂର ଗୋଦାବରୀ ନଦୀକୂଳସ୍ଥ ନାଦେର ସହରରେ ଯାଇ ପହଞ୍ଚିଲେ । ଏହି ନାଦେରରେ ତାଙ୍କର ଶେଷ ଜୀବନଟି କଟିଥିଲା ।

ନାଦେରରେ ଥିବାବେଳେ ମାଧବ ଦାସ ନାମକ ଜଣେ ବୈରାଗୀ ଗୁରୁଙ୍କଠାରୁ ଖାଲସା ଧର୍ମ ଗ୍ରହଣ କରିଥିଲେ । ଏହାଙ୍କ ଅନ୍ୟ ନାମ 'ବାନ୍ଦା ।' ଗୋବିନ୍ଦ ଏହି ନବୀନ ଶିଷ୍ୟଙ୍କ ଗୁଣରେ ସନ୍ତୁଷ୍ଟ ହୋଇ କେତେ ଜଣ ସୈନ୍ୟ ଓ ଅସ୍ତ୍ରଶସ୍ତ୍ର ସହିତ ପଞ୍ଜାବରେ ସାଧୁମାନଙ୍କୁ ରକ୍ଷା କରିବା ପାଇଁ ପଠାଇଲେ । ବାନ୍ଦାର ଅଦ୍ଭୁତ ବିକ୍ରମରେ ସବୁ ଅତ୍ୟାଚାରୀ ସୁବାଦାର ସରଦାରମାନେ ବ୍ୟତିବ୍ୟସ୍ତ ହୋଇ ପଡିଲେ । ପଞ୍ଜାବର ସହରେ ସହରେ ଅଗ୍ନି ଜଳି ଉଠିଲା—ତରବାରିରୁ ରକ୍ତଧାରା ଶୁଖିଲା ନାହିଁ । ଦେଖି ଦେଖୁ ପାଞ୍ଚଟି ମହାସମରରେ ବାନ୍ଦା ବିଜୟୀ ହେଲା । ମାତ୍ର ଏହା ସଙ୍ଗେ ତାର ପତନ ମଧ୍ୟ ନିକଟ ହୋଇ ଆସିଲା । ବାନ୍ଦା ସନ୍ନ୍ୟାସୀ ହୋଇ ଧନପ୍ରତି ଲୋଭ କଲା, ନିଜେ ଗୁରୁ ଆସନରେ ବସିଲା, ସଂସାରର ସୁଖଭୋଗ

ଲେଢ଼ିଲା । ଗର୍ବରେ ଅନ୍ଧ ହୋଇ ଗୁରୁଙ୍କ ଆଜ୍ଞା ଭୁଲି ନାନା କୁପଥରେ ଗଲା । ଶେଷରେ ଶତ୍ରୁମାନେ ତାକୁ ଧରି ବଡ଼ ନିଷ୍ଠୁର ଭାବରେ ହତ୍ୟା କଲେ ।

ଏହା ଆଗରୁ ଗୋବିନ୍ଦଙ୍କର ଜୀବନଲୀଳା ଶେଷ ହୋଇଥିଲା । ଗୁରୁ ହରଗୋବିନ୍ଦଙ୍କ ସମୟରେ "ନାନ୍ଦେର"ର କେତେ ମୁସଲମାନ ଶିଖ-ମାନଙ୍କ ଦ୍ୱାରା କୌଣସି ଏକ ଯୁଦ୍ଧରେ ମରିଥିଲେ । ସେଠାରେ ଥିବାବେଳେ ଜଣେ ମୁସଲମାନ ବାଳକ ସେହି ରାଗରେ ଗୁରୁଙ୍କ ପେଟକୁ ଭୟଙ୍କର ଭାବରେ ଆଘାତ କଲା । ଏହି ଆଘାତର କେତେ ଦିନ ପରେ ଗୁରୁ ଗୋବିନ୍ଦ ଚିରକାଳ ପାଇଁ ଜଗତରୁ ବିଦାୟ ନେଲେ ।

ସେ ଦିନ ୧୭୦୮ ଖ୍ରୀଷ୍ଟାବ୍ଦର କାର୍ତ୍ତିକ ମାସର ଶୁକ୍ଳ ପଞ୍ଚମୀ ତିଥି ନାନ୍ଦେରର ପବିତ୍ର ଆଶ୍ରମରେ ଗୁରୁଦର୍ଶନ ପାଇଁ ଅଗଣିତ ଭକ୍ତ ଏକାଠି ହୋଇଛନ୍ତି । ଆଉ ବେଶୀ ସମୟ ନାହିଁ, ଗୁରୁ ଜଗତରୁ ବିଦାୟ ନେବେ— ସମସ୍ତଙ୍କ ଆଖିରେ ଲୁହ, ସମସ୍ତଙ୍କ ହୃଦୟ ଥରୁଛି !

ମରଣ ନିକଟ ହୋଇ ଆସିଲା । ଧୀରେ ଧୀରେ ଗୁରୁ କହିଲେ— "ପ୍ରାଣପ୍ରିୟ ଖାଲସା ! ଆଉ ତୁମମାନଙ୍କର ଗୁରୁ ଲୋଡ଼ା ନାହିଁ । ଶିଖ ଜଗତରେ ମନୁଷ୍ୟ ହୋଇ ସାରିଛି । ତାକୁ ଆଉ ପଛେଇବାକୁ ପଡ଼ିବ ନାହିଁ, ଜଗତରେ ଅପରିଚିତ ହୋଇ ରହିବାକୁ ହେବ ନାହିଁ ।" ପୁଣି କହିଲେ— "ମୋର ଏ ସମାଧି ସ୍ଥାନରେ ମନ୍ଦିର ପ୍ରତିଷ୍ଠା କରାଇ ମୂର୍ତ୍ତି-ଚିହ୍ନ ରଖିବ ନାହିଁ । ଏଠି ଯାହା ଧନସମ୍ପତ୍ତି ମିଳିବ, ତାକୁ ଜାତିର ଦରିଦ୍ର ସାଧୁ ସନ୍ନ୍ୟାସୀ ପାଇବେ । ଯାଅ ଖାଲସା ! କୃପାଣ ରଖ, ତରବାରର ପୂଜା କର, ଧର୍ମଦ୍ରୋହୀଙ୍କୁ ଦଣ୍ଡ ଦିଅ । ଭାଇକୁ ଭାଇ ବୋଲି ଡାକ, ସତ୍ୟ ପାଇଁ ଠିଆ ହୁଅ । ଅନ୍ୟାୟ ଯେତେ ପ୍ରବଳ ହେଉ, ଅତ୍ୟାଚାରୀ ଯେତେ ଦଣ୍ଡ ଦେଉ, କେବେ ମୁଣ୍ଡ ନୁଆଁଅ ନାହିଁ । ଅଟଳ ରହ, ଯେପରି ହିମାଚଳ; ଗମ୍ଭୀର ହୁଅ, ଯେପରି ଅନନ୍ତ ଆକାଶ; ମୁକ୍ତ ହୁଅ, ଯେପରି ପ୍ରଭଞ୍ଜନ; ଆଗକୁ ଚାଲ, ଯେପରି ତରଙ୍ଗିଣୀ । ଯାଅ, ଜଗତରେ ଶିଖ ଜାତିର

ବିଜୟପତାକା ଉଡ଼ାଅ ।” କହୁ କହୁ କଣ୍ଠ ରୁଦ୍ଧ ହୋଇ ଆସିଲା, ଆଖି ଦୁଇଟି ମୁଦ ହୋଇପଡ଼ିଲା—ଗୋଟିଏ ଉନ୍ନତ ପବିତ୍ର ଆତ୍ମା ଅନନ୍ତ ଧାମରେ ମିଶିଗଲା !—ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭାରତ-ଆକାଶରୁ ଖସିପଡ଼ିଲା ! !



**ସମାପ୍ତ**

Printed by B. K. Kar B., A. at the Saraswata Press. Cuttack, 1934